# ଔଷଧୀ ବୃକ୍ଷ



ଶୁଭଶ୍ରୀ
ବସନ୍ତପୁର, ଅଣଖିଆ
ଜଗତ୍ସିଂହପୁର

**K. V. Rao,** O.A.S.
Block Development Officer
**Biridi**

**ଶୁଭଶ୍ରୀ** ସମାଜସେବା ସାହିତ୍ୟ ସାଂସ୍କୃତିକ ସଂସଦ ବସନ୍ତପୁର ଦ୍ୱାରା ଜନସ୍ୱାସ୍ଥ୍ୟ ପରିବେଶ ସଚେତନ ଅଭିଯାନ ୧୯୯୬-୯୭ ଅବସରରେ ପ୍ରକାଶିତ ହେବାକୁ ଯାଉଥିବା ପୁସ୍ତକ **"ଔଷଧି ବୃକ୍ଷ"** ମାଧ୍ୟମରେ ଅନେକଗୁଡ଼ିଏ ଔଷଧୀୟ ବୃକ୍ଷର ସୂଚନା ପ୍ରଦାନ କରାଯାଇଅଛି । ଏହି ସମସ୍ତ ବୃକ୍ଷ ଜନସାଧାରଣ ନିଜ ବାଡ଼ି ବଗିଚାରେ ରୋପଣ କଲେ ପରିବେଶ ସମୃଦ୍ଧ ହେବା ସଙ୍ଗେ ସଙ୍ଗେ ସେମାନଙ୍କ ପରିବାରର ଆର୍ଥନୈତିକ ଅଭିବୃଦ୍ଧି ହୋଇପାରିବ ବୋଲି ମୋର ଦୃଢ଼ ବିଶ୍ୱାସ ।

**S/d-K. V. Rao.**

**Sri Girish Chandra Pradhan**
Asst. Soil Conservation Officer
**Jagatsinghpur.**

Date..................

Place.................

**'ଶୁଭଶ୍ରୀ'** ପକ୍ଷରୁ **'ଔଷଧୀ ବୃକ୍ଷ'** କ୍ଷୁଦ୍ର ପୁସ୍ତିକା ଆକାରରେ ପ୍ରକାଶ ଏକ ସାଧୁ ଉଦ୍ୟମ । ଆମ ଗ୍ରାମାଞ୍ଚଳରେ ପୂର୍ବରୁ ପ୍ରଚଳିତ ଦେଶୀ ଚିକିତ୍ସା ଏବେ ଲୁପ୍ତ ପ୍ରାୟ । ଏହାର ପୁନରୁଦ୍ଧାର ଓ ପ୍ରସାର ନିମିତ୍ତ **'ଶୁଭଶ୍ରୀ'**ର ପ୍ରଚେଷ୍ଟା ବିଶେଷ ସ୍ୱାଗତ ଯୋଗ୍ୟ । **'ଶୁଭଶ୍ରୀ'**ର ସମ୍ପାଦକ **ସୁଧୀର ବାବୁ** ଓ ଅନ୍ୟ ଉତ୍ସାହୀ ସଭ୍ୟମାନେ ପୁସ୍ତିକାଟିର ବିଷୟବସ୍ତୁ ସଂଗ୍ରହ ନିମନ୍ତେ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ସହ ସାକ୍ଷାତ ଆଲୋଚନା କରି ଅନେକ କଷ୍ଟ ସ୍ୱୀକାର କରିଛନ୍ତି । ସେ ସମସ୍ତଙ୍କୁ ଅନେକ ଶୁଭେଚ୍ଛା ସହ **'ଶୁଭଶ୍ରୀ'** ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

**ସ୍ୱା- ଗିରିଶ ପ୍ରଧାନ**
୧୪ । ୭ । ୯୭

**ନଗେନ୍ଦ୍ର ନାଥ ନାୟକ, (ଓ. ଆର. ଏସ୍.)**
**ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ**
ଜଗତସିଂହପୁର

**ଶୁଭଶ୍ରୀ** ସମାଜସେବା ସାହିତ୍ୟ ସାଂସ୍କୃତିକସଂସଦ ବସନ୍ତପୁରର, ଜାତୀୟ ପରିବେଶ ସଚେତନ ଅଭିଯାନ—୧୯୯୭ ଉପଲକ୍ଷେ **"ଔଷଧି ବୃକ୍ଷ"** ପୁସ୍ତକ ପ୍ରକାଶନ ଏକ ମହତ ଉଦ୍ୟମ । ପରିବେଶ ସୁରକ୍ଷା କ୍ଷେତ୍ରରେ ଉଦ୍ଭିଦର ଭୂମିକା ସର୍ବଜନ ବିଦିତ । ଔଷଧିୟ ବୃକ୍ଷ ରୋପଣ କଲେ ଏହାର ସୁଫଳ ଦ୍ୱାରା ରୋଗ ଦୂର କରିବାରେ ସହାୟତା ହେବା ସହିତ ରୋଜଗାର ବୃଦ୍ଧିରେ ସହାୟକ ହେବ ଓ ପରିବେଶ ସୁରକ୍ଷାରେ ଗଛର ଆବଶ୍ୟକତା ପୂରଣ ହୋଇପାରିବ । ଏହା ଅନିବାର୍ଯ୍ୟ ।

ଉକ୍ତ ପୁସ୍ତକଟିରେ ଲିଖିତ ଔଷଧିୟ ବୃକ୍ଷଗୁଡ଼ିକୁ ପ୍ରତି ପରିବାର ନିଜ ନିଜ ବାଡ଼ି ବଗିଚାରେ ରୋପଣ କଲେ ନିଜର ମଙ୍ଗଳ ହେବା ସହିତ ସମାଜର ମଙ୍ଗଳ ହେବ ବୋଲି ମୁଁ ଆଶାକରେ । **"ଶୁଭଶ୍ରୀ"** ପ୍ରୟାସର ସଫଳତା କାମନା କରେ ।

**ସ୍ୱା- ନଗେନ୍ଦ୍ର ନାଥ ନାୟକ**
ତା ୩୦ । ୬ । ୯୭

ପ୍ରକୃତ୍ୟୈବ ମନୁଷ୍ୟାଣାଂ ସର୍ବାଗ୍ରେ ସର୍ବଶୁଭପ୍ରଦମ୍
ଔଷଧୈଃ ଗୁଣ ମାପ୍ନନଂ ଲୋକାଭିଃ ରୋଗାତ୍ ମୁକ୍ତି ପ୍ରଦମ୍ ।

ଏହି ପୁସ୍ତକଟିରେ ଅଳ୍ପ କେତୋଟି ଔଷଧୀୟ ବୃକ୍ଷ ସମ୍ବନ୍ଧରେ ଉପଲବ୍ଧ ତଥ୍ୟ ପ୍ରଦାନ କରାଯାଇଅଛି । ଏହା ଭିନ୍ନ ଅନ୍ୟାନ୍ୟ କେତେକ ଦରକାରୀ ବୃକ୍ଷର ନାମ ମଧ୍ୟ ନିମ୍ନରେ ଉଲ୍ଲେଖ ଅଛି । ଏହି ବୃକ୍ଷ ଗୁଡ଼ିକୁ ଜାଣିବେ ଓ ଏହାର ରକ୍ଷଣା ବେକ୍ଷଣ ତଥା ରୋପଣ କରିବେ, ଏହାହିଁ ପୁସ୍ତିକାଟିର ପ୍ରୟାସ । ଏହି ବୃକ୍ଷମାନଙ୍କ ସମ୍ବନ୍ଧରେ ଜାଣିବା ଶୁଣିବା ପୁରୁଖା ଲୋକ ତଥା ଆୟୁର୍ବେଦୀୟ ପରାମର୍ଶ ଦାତା-ମାନଙ୍କୁ ଭେଟି ସେମାନଙ୍କର ଉପଦେଶରେ ଆପଣ ନିଜ ଉଦ୍ୟମକୁ ସଫଳ କରିପାରିବେ । ନଚେତ୍ ପରାମର୍ଶ ଦ୍ୱାରା ଆପଣଙ୍କ ଦରକାରୀ ବୃକ୍ଷ ସମ୍ବନ୍ଧରେ ଧାରଣା ପାଇ ପାରିବେ ।

ଠିକଣା
**"ଶୁ ଭ ଶ୍ରୀ"**
ବସନ୍ତପୁର, ଅଣଖିଆ, ଜଗତସିଂହପୁର

**ପୁସ୍ତକରେ ଲିଖିତ :** ବେଲ, କଦମ୍ବ, ନାଗେଶ୍ୱର, ଅର୍ଜୁନ, ଅଶୋକ, ବଉଳ, ଗମ୍ଭାରୀ, ହରିଡ଼ା, ବାହାଡ଼ା, ଅଁଳା ଅଶ୍ୱତ୍ଥ, ଗୁଡ଼ୁଚିକ, ଡ଼ାଲଚିନି, ତେଜପତ୍ର, ଭାଲିଆ, ବରଗଛ, ଚାଳମୁଗ୍ରୀ, ସଜନା, ଗସ୍ତା ଅଶ୍ୱତ୍ଥ, ବରୁଣ, ଝଗଲେମ୍ବୁ, ଚମ୍ପକ, କାଠଚମ୍ପା,

ମୂତ୍ରକୁନ୍ଦ ଚହ୍ନ, ଚଳିତ, ବେତ, ସାହାଡ଼ା, ଚୌଟିଭଙ୍ଗ, କୁଟେଜ, ଅଗସ୍ତି, ଅରଖ, ବେଗୁନିଆ।

**ଅନନ୍ୟାନ୍ୟ :** ଅଙ୍କରାନ୍ତ(ଲେଙ୍ଗବାକ ଗଣ), ଇନ୍ଦ୍ରମାରିଷ, ଗୁଳୁଚି, ଜାଳିମ୍ବ, ତୁଳସୀ, ବାସଙ୍ଗ, ବେଣା, ବ୍ରାହ୍ମୀ, ମୁଥା, ଶ୍ୱେତଚଚଉରୁ, କଇଥ, ଅଗସ୍ତ, ଅପରାଜିତା, ଅମରପୋଇ, କଣ୍ଟାକେଳଉଠିଆ, କାଙ୍କର କୋଇଲିଖିଆ, ଗଇସ, ଗବ, ଘିକୁଆଁରୀ, ଗୁକୁଣ୍ଡା, ଢ଼ମିରା, ନସାତ୍ରୁଣୀ ପାତାଳଗରୁଡ଼, ପିତାଚେଡ଼ା, ପିପ୍ପଳୀ, ପୋଦିନା, ଭଲ୍ଲୁଆଳୁ, ବିଶଲ୍ୟକରଣୀ, ଲାଜକୁଳୀ, ସୁନୁସୁନିଆ ଇତ୍ୟାଦି ବୃକ୍ଷଲତାର ଗୁଣ ଅଶେଷ। ଏହାର ବିଧି ମୁତାବକ ରୋଗରେ ଚିକିତ୍ସା ପୂର୍ବରୁ ଉପଯୁକ୍ତ ପରାମର୍ଶ ନେବା ଏକାନ୍ତ ପ୍ରୟୋଜନ।

**ଆମ ପରିବେଶ ଗଛକୁ ନେଇ**
**ଆମେହିଁ ବଞ୍ଚିବା ତାହାର ପାଇଁ ॥**



# ନିବେଦନ

ପ୍ରଗତି କିଶୋରେ ପାଗଳ ମଣିଷ ହଠାତ୍ ଯେଉଁଦିନ ପରିବେଶ କଥା ଚିନ୍ତାକଲା ସେଦିନ ଥିଲା ୧୯୭୨ ମସିହା ଜୁନ ୫ ତାରିଖ । ଆଜିକୁ ୨୫ ବର୍ଷ ଧରି ସେଇ ଦିନଟିକୁ ପୃଥିବୀବାସି ବିଶ୍ୱ ପରିବେଶ ଦିବସ ଭାବେ ପାଳନ କରି ପରିବେଶର ସୁରକ୍ଷା କଥା ଚିନ୍ତାକରି ଆସୁଛି । କିନ୍ତୁ ଦୁଃଖର କଥା ପରିବେଶ ସୁଧୁରିବା ପରିବର୍ତ୍ତେ କ୍ରମାଗତ ଭାବେ ଅବକ୍ଷୟ ହୋଇ ଚାଲିଛି । ଶିଳ୍ପର ପ୍ରଗତି, ଜନସଂଖ୍ୟା ବୃଦ୍ଧି ଓ ବିଜ୍ଞାନର ଉପଯୁକ୍ତ ଉପଯୋଗର ଅଭାବ୍ ସହିତ ମଣିଷ ସମାଜର ସଚେତନତାର ଯୋଗୁଁ ଅଭାବ ଏଭଳି ଏକ ଚିନ୍ତାଯୁକ୍ତ ପରିସ୍ଥିତି ସୃଷ୍ଟି କରିଛି । ଦୂର ନିକଟ ଭବିଷ୍ୟତରେ ଏହି ଅବସ୍ଥା ଏକ ଭୟଙ୍କର ରୂପ ଧାରଣ କରିବା ସଙ୍ଗେ ସଙ୍ଗେ ଜୀବ ଜଗତର ଧ୍ୱଂସର କାରଣ ହେବ ବୋଲି ଅନୁଭବ କରି ପରିବେଶ ବିଜ୍ଞାନୀମାନେ ଭୟ ଓ ଆଶଙ୍କା ମଧ୍ୟରେ ଗତି କରୁଛନ୍ତି । କିନ୍ତୁ ନିଜ ସ୍ୱାର୍ଥରେ ମସଗୁଲ ମଣିଷର କୁମ୍ଭ-କର୍ଣ୍ଣ ନିଦ୍ରା ଭାଙ୍ଗୁ ନାହିଁ । ସମଗ୍ର ମାନବ ସଭ୍ୟତା ନିଜ ନିଜ ଆଚରଣ ଭିତରେ ପରିବେଶର ସୁରକ୍ଷା ପାଇଁ ଯତ୍ନଶୀଳ ନହେଲେ ପରିବେଶ ଧ୍ୱଂସହେବ ଓ ତାର ପରିଣତି ଭୋଗ କରିବ ପୃଥିବୀ ପୃଷ୍ଠର ସମସ୍ତ ଜୀବ ଓ ଜଡ଼ ।

ପରିବେଶରେ ଅଛନ୍ତି ଦୁଇଭାଗ ଜୀବ ଓ ଜଡ଼ । ଜୀବ ପୁଣି ଦୁଇ ଭାଗରେ ବିଭକ୍ତ ପ୍ରାଣୀ ଓ ଉଦ୍‌ଭିଦ । ଉଦ୍‌ଭିଦ ପ୍ରାଣୀ ମାନଙ୍କ ସୁରକ୍ଷା ପାଇଁ ସୃଷ୍ଟି । ଉଦ୍‌ଭିଦ, ପ୍ରକୃତି ଓ ପରିବେଶରୁ ସଂଗ୍ରହ କରି ଖାଦ୍ୟ ତିଆରି କରେ ଓ ପ୍ରାଣୀ ତାହା ଗ୍ରହଣ କରି ବଞ୍ଚନ୍ତି । ଜୀବ ମାନଙ୍କ ମଧ୍ୟରେ ଶ୍ରେଷ୍ଠପ୍ରାଣୀ ମଣିଷର ସର୍ବଗ୍ରାସୀ ଆଚରଣ ପରିବେଶକୁ ସର୍ବାଧିକ ମାତ୍ରାରେ କ୍ଷତିଗ୍ରସ୍ତ କରିବା ସହିତ ଉଦ୍‌ଭିଦ ଜଗତକୁ ଧ୍ୱଂସାଭିମୁଖୀ କରୁଛି । ଦିନ ଆସିବ ପୃଥିବୀ ପୃଷ୍ଠରୁ ଉଦ୍‌ଭିଦ ଜଗତ ସମ୍ପୂର୍ଣ୍ଣ ନିଃଶେଷ ହୋଇଯିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

# ନିବେଦନ

ପ୍ରଗତି ନାଁରେ ପାଗଳ ମଣିଷ ହଠାତ୍ ଯେଉଁଦିନ ପରିବେଶ କଥା ଚିନ୍ତାକଲା ସେଦିନ ଥିଲା ୧୯୭୨ ମସିହା ଜୁନ ୫ ତାରିଖ । ଆଜକୁ ୨୫ ବର୍ଷ ଧରି ସେଇ ଦିନଟିକୁ ପୃଥିବୀବାସି ବିଶ୍ୱ ପରିବେଶ ଦିବସ ଭାବେ ପାଳନ କରି ପରିବେଶର ସୁରକ୍ଷା କଥା ଚିନ୍ତାକରି ଆସୁଛି । କିନ୍ତୁ ଦୁଃଖର କଥା ପରିବେଶ ସୁଧୁରିବା ପରିବର୍ତ୍ତେ କ୍ରମାଗତି ଭାବେ ଅବକ୍ଷୟ ହୋଇ ଚାଲିଛି । ଶିଳ୍ପାୟନ ପ୍ରଗତି, ଜନସଂଖ୍ୟା ବୃଦ୍ଧି ଓ ବିଜ୍ଞାନର ଉପଯୁକ୍ତ ଉପଯୋଗର ଅଭାବ ସହିତ ମଣିଷ ସମାଜର ସଚେତନତାର ଘୋର ଅଭାବ ଏଭଳି ଏକ ଚିନ୍ତନୀୟ ପରିସ୍ଥିତି ସୃଷ୍ଟି କରିଛି । ଖୁବ ନିକଟ ଭବିଷ୍ୟତରେ ଏହି ଅବସ୍ଥା ଏକ ଭୟଙ୍କର ରୂପ ଧାରଣ କରିବା ସଙ୍ଗେ ସଙ୍ଗେ ଜୀବ ଜଗତର ଧ୍ୱଂସର କାରଣ ହେବ ବୋଲି ଅନୁଭବ କରି ପରିବେଶ ବିଜ୍ଞାନୀମାନେ ଭୟ ଓ ଆଶଙ୍କା ମଧ୍ୟରେ ଗତି କରୁଛନ୍ତି । କିନ୍ତୁ ନିଜ ସ୍ୱାର୍ଥରେ ମସଗୁଲ ମଣିଷର କୁମ୍ଭକର୍ଣ୍ଣ ନିଦ୍ରା ଭାଙ୍ଗୁ ନାହିଁ । ସମଗ୍ର ମାନବ ସଭ୍ୟତା ଦୈନନ୍ଦିନ ଆଚରଣ ଭିତରେ ପରିବେଶର ସୁରକ୍ଷା ପାଇଁ ଯତ୍ନଶୀଳ ନହେଲେ ପରିବେଶ ଧ୍ୱଂସହେବ ଓ ତାର ପରିଣତି ଭୋଗ କରିବ ପୃଥିବୀ ପୃଷ୍ଠର ସମସ୍ତ ଜୀବ ଓ ଜଡ଼ ।

ପରିବେଶରେ ଦୁଇଟି ବିଭାଗ ଜୀବ ଓ ଜଡ଼ । ଜୀବ ପୁଣି ଦୁଇ ଭାଗରେ ବିଭକ୍ତ ପ୍ରାଣୀ ଓ ଉଦ୍ଭିଦ । ଉଦ୍ଭିଦ ପ୍ରାଣୀ ମାନଙ୍କ ସୁରକ୍ଷା ପାଇଁ ସୃଷ୍ଟି । ଉଦ୍ଭିଦ, ପ୍ରକୃତି ଓ ପରିବେଶରୁ ସଂଗ୍ରହ କରି ଖାଦ୍ୟ ଗଢ଼େ ଓ ପ୍ରାଣୀ ତାହା ଗ୍ରହଣ କରି ବଞ୍ଚେ । ଜୀବ ମାନଙ୍କ ମଧ୍ୟରେ ଶ୍ରେଷ୍ଠପ୍ରାଣୀ ମଣିଷର ସର୍ବଗ୍ରାସୀ ଆଚରଣ ପରିବେଶକୁ ସର୍ବାଧିକ ମାତ୍ରାରେ କ୍ଷତିଗ୍ରସ୍ତ କରିବା ସହିତ ଉଦ୍ଭିଦ ଜଗତକୁ ଧ୍ୱଂସାଭିମୁଖୀ କରି ଚାଲିଛି । ଖୁବ ଶୀଘ୍ର ଆମର ପୃଥିବୀ ପୃଷ୍ଠରୁ ଉଦ୍ଭିଦ ଜଗତ ସମ୍ପୂର୍ଣ୍ଣ ନିଃଶେଷ ହୋଇଯିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଆମ ସାତ ପୁରୁଷର ସାଇତା ଜଙ୍ଗଲ ଆଉ ନାହିଁ । ଏହି କାରଣରୁ ଦୁର୍ଲଭ ଦ୍ରବ୍ୟରୁ ଅନେକ ଜୀବ ମରିହଜି ଗଲେଣି । ବଣ ଜଙ୍ଗଲରେ ବାସ କରୁଥିବା ପ୍ରାଣୀ ମାନଙ୍କ ମଧ୍ୟରୁ ମାଙ୍କଡ଼ ମାନଙ୍କର ପ୍ରାଦୁର୍ଭାବ ମଣିଷ ସମାଜ ଅନୁଭବ କଲଣି । ବାଡ଼ ବଗିଚାରେ ଫଳ ଫଳିବାର ପର-ମୁହୂର୍ତ୍ତରେ ହାବୁଡ଼ ଯାଇ ଶେଷହେବା ପର୍ଯ୍ୟନ୍ତ ଅପେକ୍ଷା କରି ଉଜାଡ଼ି ଯାଆନ୍ତି ସେମାନେ । ସେଇ ମାଙ୍କଡ଼ମାନଙ୍କ ଭଳି ଆମର ସ୍ୱାର୍ଥକୁ ଶୋଷି ନେବାପାଇଁ ହାବୁଡ଼ ଗଲେଣି ବହୁଦେଶୀୟ କମ୍ପାନୀମାନେ । ନିମ୍ବଭଳି ଅନେକ ଔଷଧୀ ବୃକ୍ଷରୁ ପ୍ରସ୍ତୁତ ଔଷଧକୁ ପେଟେଣ୍ଟ ଆଇନ ପର୍ଯ୍ୟାୟ-ଭୁକ୍ତକରି ଆମକୁ ଶୋଷଣ କରିବା ସହିତ ଆମ ପରିବେଶକୁ ଧ୍ୱଂସ କରିଦେବେ ସେମାନେ । ଆମ ଦାରିଦ୍ର୍ୟ ଆମ ମୁଣ୍ଡ କିଣିବାକୁ ସେମାନଙ୍କୁ ସୁଯୋଗ ଦେଇଛି ।

ଆମ ଦାରିଦ୍ର୍ୟତା ଦୂର କରିବା ପାଇଁ ଜନସଂଖ୍ୟାକୁ ନିୟନ୍ତ୍ରଣ କରିବା ସଙ୍ଗେ ସଙ୍ଗେ ଔଷଧୀୟ ବୃକ୍ଷର ଉପାଦେୟତାକୁ ଅନୁଭବ କରି ଏହାର ରୋପଣ ମାଧ୍ୟମରେ ଆୟ ରୋଜଗାର ବଢ଼ାଇବାକୁ ହେବ । ଯାହା ପ୍ରକାରାନ୍ତରେ ପରିବେଶ ସୁରକ୍ଷାରେ ସହାୟକ ହେବ ।

ଏହି ଉପାଦେୟ ପୁସ୍ତକଟିରେ ତତ୍‌ସମ୍ବନ୍ଧିୟ ପ୍ରଚଳିତ କେତେକ ଔଷଧୀୟ ବୃକ୍ଷର ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ଏହାର ବ୍ୟବହାରିକ ଗୁଣ ଗୁଡ଼ିକୁ ଉପଲବ୍ଧି କରି ଔଷଧୀୟ ବୃକ୍ଷ ରୋପଣକୁ ଏକ ଆନ୍ଦୋଳନ ଭାବରେ ଗଢ଼ି ତୋଳିଲେ **ଶୁଭଶ୍ରୀ**ର ପ୍ରୟାସ ସାର୍ଥକ ହେବାସହ ପ୍ରାଚୀନ ଭାରତର ବନୌଷଧିର ବ୍ୟବହାର ପୁନର୍ଜନ୍ମ ଲାଭକରିବ ଓ ଔଷଧ ମାଧ୍ୟମରେ ବିଦେଶୀ ଶକ୍ତିର ଶୋଷଣକୁ ପ୍ରତିହତ କରିଦେବ ।

**ଶୁଭଶ୍ରୀ ପରିବାର**

କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ ତଥା ଅନେକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତରଫରୁ ସର୍ବ ସାଧାରଣ ସ୍ଥାନ ଏବଂ ରାସ୍ତାର ଦୁଇ ଧାରରେ ବୃକ୍ଷରୋପଣ କରା ଯାଉଅଛି । ଉକ୍ତ ବୃକ୍ଷ ରୋପଣରେ କେତେକ ପରିବର୍ତ୍ତନ ଘଟାଇ ସହ ନିମ୍ନମତେ କେତୋଟି ଆୟୁର୍ବେଦୀୟ ଗୁଣଯୁକ୍ତ ଲୁପ୍ତ ହୋଇ ଆସୁଥିବା ବୃକ୍ଷ ରୋପଣ କରାଯାଆନ୍ତା ତେବେ ପରିବେଶ ପ୍ରଦୂଷଣ ମୁକ୍ତହେବା ସହ ସମାଜର ଉପକାର ହୋଇ ପାରନ୍ତା ।

**୧- ବେଲ ବା ବିଲ୍ୱ**---ବେଲଗଛକୁ ସମସ୍ତେ ଜାଣନ୍ତି । ଗ୍ରାମାଞ୍ଚଳରେ ଏହା ସର୍ବତ୍ର ଦେଖିବାକୁ ମିଳୁଥିଲେ ମଧ୍ୟ ଏବେ ପ୍ରାୟତଃ ଏହାର ସଂଖ୍ୟା କମି କମି ଆସୁଛି । ଅନ୍ୟ ଯେକୌଣସି ଗଛଟିଏ ବଢ଼ାଇଲେ ଯେତିକି ଯତ୍ନ ନେବାକୁ ପଡ଼ିବ ସେତିକି ଯତ୍ନରେ ବେଲଗଛଟିଏ ହୋଇ ପାରିବ । ବେଲଗଛର କାଠ ମୂଲ୍ୟବାନ ନହୋଇ ଥିବାରୁ ଏହାର ଔଷଧୀୟ ଗୁଣ ପ୍ରତି ଦୃଷ୍ଟି ନଦେଇ ସାଧାରଣ ଲୋକ ସାଗୁଆନ ପରି ମୂଲ୍ୟବାନ ଗଛ ପ୍ରାୟତଃ ରୋପଣ କରିଥାନ୍ତି । ବେଲପତ୍ର, ଗୋଲ-ମରିଚ ଉଦରାମୟ ରୋଗ ଦୂର କରିବା ସହ ଅଗ୍ନିବୃଦ୍ଧି କରିଥାଏ । ସେପରି ଶୁଖିଲାବେଲ (ବେଲଶୁଣ୍ଠା) ବା ବେଲରୁ ତିଆରି ମୁର୍ ବା ବହୁଦିନର ସଂଗ୍ରହଣୀ ଏବଂ ଅତିସାର ପ୍ରଭୃତି ଝାଡ଼ାରୋଗ ଆରୋଗ୍ୟ କରିଥାଏ । ବ୍ୟବସାୟିକ ଗୁଣ- ସାଧାରଣ ଲୋକେ କଞ୍ଚାବେଲ ସଂଗ୍ରହ କରି କାଟି ଶୁଖାଇ ଅର୍ଥ ଉପାର୍ଜନ କରିବା ସହ ପାଚିଲାବେଲ ପରିବାର ପାଇଁ ଖାଦ୍ୟଭାବେ ବ୍ୟବହାର କରିବେ ଏବଂ ବିକ୍ରୀକରି ଅର୍ଥଉପାର୍ଜନ କରି ପାରିବେ ।

**୨- ନିମ୍ବ**—ଓଡ଼ିଆ ଜାତିର ଇଷ୍ଟ ତଥା ହିନ୍ଦୁ ସମ୍ପ୍ରଦାୟର ଆରାଧ୍ୟ ଦେବତା ଜଗନ୍ନାଥ ଯେଉଁ ବୃକ୍ଷରୁ ନିଜର କଳେବର ପ୍ରସ୍ତୁତ କରାଇଲେ

ତାହାର ଔଷଧୀୟ ଗୁଣ ଅପାର । ଗାନ୍ଧିଜୀଙ୍କ ଜୀବନବୃତ୍ତରୁ ଦେଖିଲେ ପ୍ରଥମେ ନିମ୍ବକୁ ପେଟେଣ୍ଟ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିଲା ବହୁଦେଶୀୟ କମ୍ପାନୀର ଉଦ୍ଦେଶ୍ୟ ନିମ୍ବ ଉପଲବ୍ଧ ହେଉଥିବା ଆମ ଅଞ୍ଚଳବାସୀ ବୁଝିବା ସମ୍ଭବ ହୋଇନି । ନିମ୍ବ ଆମ ବାଡ଼ିପଟରେ ଦେଖା ଯାଇଥାଏ । କାଠ ମୂଲ୍ୟରେ ମୂଲ୍ୟହୀନ ହୋଇଥିବାରୁ ଆମେ କେବେ ଏହାର ମହାନ ଔଷଧୀୟ ଗୁଣକୁ ମୂଲ୍ୟାୟନ କରି ନିମ୍ବ ଗଛଟିଏ ବାଡ଼ି ବଗିଚାରେ ରୋପଣ କରୁନାହୁଁ । ପରନ୍ତୁ ଗ୍ଲାଇ ହେଉଛି କାହିଁ ଏହାକୁ ନଷ୍ଟ କରିଥାଉ । ମାତ୍ର ବାୟୁ ମଣ୍ଡଳକୁ ପ୍ରଦୂଷିତ କରୁଥିବା ଅଙ୍ଗାରକାମ୍ଳ ବାଷ୍ପକୁ ନିମ୍ବ ସର୍ବାଧିକ ଶୋଷଣ କରି ପ୍ରଦୂଷଣ ମୁକ୍ତ କରିଥାଏ । ଯେଉଁ ଗ୍ରାମର ଚତୁଃପାର୍ଶ୍ୱରେ ନିମ୍ବର ଜଙ୍ଗଲ ଥିବ ଓ ନିମ୍ବଗଛ ଦେଇ ପବନ ସର୍ବଦା ପ୍ରବାହିତ କରୁଥିବ ସେଠାରେ ବସତି କରୁଥିବା ଜନ ଜୀବନ ପ୍ରାୟ ନିରୋଗୀ ରହିବେ । ନିମ୍ବର ଦାନ୍ତକାଠି ଆମ୍ଭେମାନେ ଘଷିବା ପାଇଁ ପ୍ରଥମ ଚମ୍ପୂକ ଶାସ୍ତ୍ରରେ ଦିଆ ଯାଇଛି । ଏହାଦ୍ୱାରା ଯକୃତ ଜନିତ ରୋଗ ଦୂର ହୁଏ । ନିମ୍ବର ଫୁଲ କୃମି ନାଶକ । ନିମ୍ବପତ୍ରର ଶଯ୍ୟା ବସନ୍ତ, ମିଳିମିଳା ତଥା ହାଡ଼ଫୁଟି ଇତ୍ୟାଦି ମହାମାରୀ ରୋଗରୁ ଉପଶମ କାରକ । ନିମ୍ବ ଗଜାର ସିଝାପାଣି (କାଥ) ପିତଜ୍ୱର ନାଶକ, ନିମ୍ବ-ତେଲ କୁଷ୍ଠ,କଣ୍ଡୁ , ଦଦ୍ରୁ ନାଶକ, ନିମ୍ବ ଚେରର ଛାଲି ବାତରୋଗ ନାଶକ । ନିମ୍ବର ପାଞ୍ଚାଙ୍ଗ ନିର୍ମିତ ଦ୍ରବ୍ୟ ମହୌଷଧି । ପାଶ୍ଚାତ୍ୟ ସମୃଦ୍ଧି ଦେଶ ମାନଙ୍କରେ ଫସଲରେ ବିଷାକ୍ତ କୀଟନାଶକ ଔଷଧ ପରିବର୍ତ୍ତେ ନିମ୍ବ ମଞ୍ଜିରୁ ପ୍ରସ୍ତୁତ ବିଭିନ୍ନ ପ୍ରକାର ଔଷଧ ବ୍ୟବହାର କରିପାରୁଛନ୍ତି । କୀଟ ନାଶକ ବିଷାକ୍ତ ଔଷଧର ପ୍ରୟୋଗ ଯୋଗୁଁ ଫସଲର ଭ୍ରୂଣମଧ୍ୟରେ ସଂରକ୍ଷିତ ରହି ଫଳ ମାଧ୍ୟମରେ ଶରୀରକୁ ଯାଉଥିବା ପ୍ରମାଣିତ ହୋଇ ସାରିଲାଣି । ନିମ୍ବ ବଗିଚା ମଧ୍ୟରେ ରହି ଜୀବନ ନିମ୍ବଗଛ ମଧ୍ୟରୁ କାଢି ଔଷଧୀୟ ପ୍ରୟୋଗରୁ ନିର୍ଗତ ସାରାଂଶ ଭକ୍ଷଣ ଦ୍ୱାରା ଏଡ଼ସ୍ ଭଳି ରୋଗକୁ ଆୟତ୍ତ କରିବା ସମ୍ଭବ ହେବ ବୋଲି ପରୀକ୍ଷା ଅବ୍ୟାହତ ରହିଛି ।

ତାହାର ଔଷଧୀୟ ଗୁଣ ଅପାର । ଗାର୍ଟ୍‌ବ୍ରୁକ୍ସ ବିଳବୃତ୍ତରୁ ହେଲେ ପ୍ରଥମେ ନିମ୍ବକୁ ଉପଯୋଗ କରିବା ପାଇଁ ଇଚ୍ଛା ପ୍ରକାଶ କରିଥିବା ବହୁଦେଶୀୟ କମ୍ପାନୀର ଉଦ୍ଦେଶ୍ୟ ନିମ୍ବ ଉପଲବ୍ଧ ହେଉଥିବା ଆମ ଅଞ୍ଚଳବାସୀ ବୁଝିବା ସମ୍ଭବ ହୋଇନି । ନିମ୍ବ ଆମ ବାଡ଼ିରେ ଦେଖା ଯାଇଥାଏ । କାଠ ମୂଲ୍ୟରେ ମୂଲ୍ୟହୀନ ହୋଇଥିବାରୁ ଆମେ କେବଳ ଏହାର ମହାନ ଔଷଧୀୟ ଗୁଣକୁ ମୂଲ୍ୟାୟନ କରି ନିମ୍ବ ଗଛଟିଏ ବାଡ଼ି ବଗିଚାରେ ରୋପଣ କରୁନାହୁଁ । ପରନ୍ତୁ ଗ୍ଲଇ ହେଉଛି କାହା ଯାହାକୁ ନଷ୍ଟ କରିଥାଉ ମାନ ବାୟୁ ମଣ୍ଡଳକୁ ପ୍ରଦୂଷିତ କରୁଥିବା ଅଙ୍ଗାରକାମ୍ଳ ବାଷ୍ପକୁ ନିମ୍ବ ସର୍ବାଧିକ ଶୋଷଣ କରି ପ୍ରଦୂଷଣ ମୁକ୍ତ କରିଥାଏ । ଯେଉଁ ଗ୍ରାମର ଚତୁଃପାର୍ଶ୍ୱରେ ନିମ୍ବର ଜଙ୍ଗଲ ଥିବ ଓ ନିମ୍ବଗଛ ଦେଇ ପବନ ସର୍ବଦା ପ୍ରବାହ କରୁଥିବ ସେଠାରେ ବସତି କରୁଥିବା ଜନ ଜୀବନ ପ୍ରାୟ ନିରୋଗୀ ରହିବେ । ନିମ୍ବର ଦାନ୍ତକାଠି ଆମେମାନେ ଘଷିବା ପାଇଁ ପ୍ରଥମ ଚୟନ ଶାସ୍ତ୍ରରେ ଦିଆ ଯାଇଛି । ଏହାଦ୍ୱାରା ଯକୃତ ଜନିତ ରୋଗ ଦୂର ହୁଏ । ନିମ୍ବର ଫୁଲ କୃମି ନାଶକ । ନିମ୍ବପତ୍ରର ଶଯ୍ୟା ବସନ୍ତ, ମିଳିମିଳା ତଥା ହାତଫୁଟି ଇତ୍ୟାଦି ମହାମାରୀ ରୋଗରୁ ଉପଶମ କାରକ । ନିମ୍ବ ଛାଲର ସିଝାପାଣି (କ୍ୱାଥ) ପିତ୍ତଜ୍ୱର ନାଶକ, ନିମ୍ବ-ତେଲ କୁଷ୍ଠ, କଣ୍ଡୁ, ଦଦ୍ରୁ ନାଶକ, ନିମ୍ବ ଚେରର ଛାଲି ବାତରୋଗ ନାଶକ । ନିମ୍ବର ପାଞ୍ଚାଙ୍ଗ ମିଶ୍ରିତ ଭାବେ ମହୌଷଧି । ପାଶ୍ଚାତ୍ୟ ସମୃଦ୍ଧ ଦେଶ ମାନଙ୍କରେ ଫସଲରେ ବିଷାକ୍ତ କୀଟନାଶକ ଔଷଧ ପରିବର୍ତ୍ତେ ନିମ୍ବ ମଞ୍ଜିରୁ ପ୍ରସ୍ତୁତ ବିଭିନ୍ନ ପ୍ରକାର ଔଷଧ ବ୍ୟବହାର କରାଯାଉଛି । କୀଟ ନାଶକ ବିଷାକ୍ତ ଔଷଧର ପ୍ରୟୋଗ ଫଳରେ ଭୂଣମଧ୍ୟରେ ସଂରକ୍ଷିତ ରହି ଫଳ ମାଧ୍ୟମରେ ଶରୀରକୁ ଯାଉଥିବା ଘୋଷିତ ହୋଇ ସାରିଲାଣି । ନିମ୍ବ ବଗିଚା ମଧ୍ୟରେ ରହି ଜୀବନ୍ତ ନିମ୍ବଗଛ ମଧ୍ୟରୁ କେତେ ଔଷଧୀୟ ପ୍ରୟୋଗରୁ ନିର୍ଗତ ସାରାଂଶ ଭକ୍ଷଣ ଦ୍ୱାରା ଏଡ଼ସ୍ ଭଳି ରୋଗକୁ ଆୟତ୍ତ କରିବା ସମ୍ଭବ ହେବ ବୋଲି ପରୀକ୍ଷା ଅବ୍ୟାହତ ରହିଛି ।

ବ୍ୟବସାୟିକ ଆବଶ୍ୟକତା—ଲମ୍ବର ଫୁଲକୁ ସଂଗ୍ରହ କରି ପରିଷ୍କାର ପୂର୍ବକ ଖରାରେ ଭଲଭାବେ ଶୁଖାଇ ସାମାନ୍ୟ ସୈନ୍ଧବ ଲୁଣ,ଗୁଣ୍ଡ ମିଶ୍ରଣ କରି ବଜାରକୁ ପ୍ରବେଶ କରାଇଲେ ନିଶ୍ଚୟ ବ୍ୟବସାୟିକ ସଫଳତା ଦେବ । ଲମ୍ବରୁ ଏବେ କମିନ୍ ପରି ଅନେକ ପେଟେଣ୍ଟ ଔଷଧ ତିଆରି ଆରମ୍ଭ ହୋଇଥିବାରୁ ଶାଳ ମଞ୍ଜିଠାରୁମଧ ଲମ୍ବମଞ୍ଜିର ଆବଶ୍ୟକତା ଅଧିକ ହୋଇଛି । ଯାହା ଜଣେ ସାଧାରଣ ଅଧିବାସୀକୁ ରୋଜଗାର ଦେବ ।

**୩- ନାଗେଶ୍ୱର**—ସାମାନ୍ୟ ଡେଙ୍ଗା ଗଛ । କାଠ ଆବଶ୍ୟକତା ପୂରଣରେ ଅକ୍ଷମ ହେତୁ ଉକ୍ତ ଗଛପ୍ରତି ପ୍ରାୟତଃ ଆଗ୍ରହ ନଥାଏ । ସାଧାରଣ ଭୂମିଠାରୁ ଆରମ୍ଭ କରି ଶୁଖିଲ ଟାଙ୍ଗର ଭୂମି ପର୍ଯ୍ୟନ୍ତ ବହୁଳରୁ ସ୍ୱଳ୍ପଜଳ ସମସ୍ତ ସ୍ଥାନରେ ହୋଇପାରେ । ଧଳା ସାମାନ୍ୟ ସ୍ତ୍ରେଟ ଅତ୍ୟନ୍ତ ବାସଯୁକ୍ତ ଫୁଲ ହିଁ ଏ ବୃକ୍ଷର ମନୋରମ୍ୟତା ଆକର୍ଷଣ ଶୋଭାର ପାଇଁ ନାଗେଶ୍ୱର ଏକ ଉପାଦେୟ ବୃକ୍ଷ । ଧାତୁ ପୁଷ୍ଟି କରିବା ସହ ହୃଦରୋଗ ପାଇଁ ମଧ ଏହାର ବ୍ୟବହାରର ମାତ୍ରା ଅଧିକ । ନାସା-ଗତ ରୋଗ (ପିନସ୍) ପାଇଁ ନାଗେଶ୍ୱର ଫୁଲକୁ ଲହୁଣିରେ ବାଟି ନସ୍ୟ ନେଲେ ନିଶ୍ଚିନ୍ତ ଉପକାର ମିଳିବ । ନାଗେଶ୍ୱର ଫୁଲ, ମିଶ୍ରି ବାଟି ପ୍ରତ୍ୟହ ସକାଳୁ ଖାଇଲେ ଧାତୁଗତ ରୋଗ ଆରୋଗ୍ୟ ହୋଇଥାଏ ନାଳ, ଶୂନା ଝାଡ଼ାରେ ନାଗେଶ୍ୱର ପତ୍ର, ଅମରପୋଇ ପତ୍ର, ଗୋଲ-ମରିଚ ବାଟି ଖାଇଲେ ନିଶ୍ଚିତ ସୁଫଳ ମିଳିଥାଏ । ହୃଦୟ ବ୍ୟଥାରେ ନାଗେଶ୍ୱର ଫୁଲ, ପିପଳୀ, ସୈନ୍ଧବ ବାଟି ଖାଇଲେ ଉପସମ ମିଳେ । ଏହା ଆମ ଅଞ୍ଚଳର ଜଳବାୟୁରେ ଭଲ ବଢିଥାଏ ଓ ବର୍ଷରେ ଥରେ ଫୁଲ ଫୁଟିଥାଏ ।

ବ୍ୟବସାୟିକ ଦିଗ—ଗୋଟିଏ ୫।୬ ବର୍ଷ ବୟସର ନାଗେଶ୍ୱର ଗଛରେ ଅନ୍ୟୁନ ୫ କୁଇଣ୍ଟାଲ ଫୁଲ ଫୁଟିଥାଏ । ଯାହାକୁ ଶୁଖାଇଲେ

୧ରୁ ଦେଡ଼ କୁଇଣ୍ଟାଲ ହେବ । ବର୍ତ୍ତମାନ ବଜାରରେ ୧ କୁଇଣ୍ଟାଲ ନାଗେଶ୍ୱର ଫୁଲ ଦାମ ୪୦୦୦ (ଚାରି ହଜାର) ଟଙ୍କାରୁ ଅଧିକ ମୂଲ୍ୟରେ ବିକ୍ରି ହେଉଅଛି ।

**୪- ଅର୍ଜ୍ଜୁନ**—ଗାଁ ଗହଳରୁ ଅର୍ଜ୍ଜୁନ ଗଛ ପ୍ରାୟ ବିଲୁପ୍ତ । ସମସ୍ତ ପ୍ରକାର ମୃତ୍ତିକାରେ ଅର୍ଜ୍ଜୁନ ଗଛ ବଢ଼ିଥାଏ । ଏହା ବିରାଟ ଗଛ ହୁଏ । କାଠମଧ୍ୟ ଟାଣ । ପ୍ରଚୁର ଜାଳେଣି ସହ ଗୋଟିଏ ଗଛ ଦେଢ଼ଶହ ଫୁଟରୁ ଅଧିକ କାଠ ଦେଇଥାଏ । ବଣାଳତା ହେତୁ ଏହା ବ୍ୟେଶ୍ ସ୍ୱାସ୍ଥ୍ୟ ପ୍ରଦାୟକ । ଅର୍ଜ୍ଜୁନ ଗଛର ଛାଲରୁ ରଙ୍ଗ ପ୍ରସ୍ତୁତ ହେଉଥିବାରୁ ଏହାକୁ ବ୍ୟବସାୟିକ ଦୃଷ୍ଟିରୁ ଅଧିକ ମୂଲ୍ୟାୟନ କରିହେବ । ଅର୍ଜ୍ଜୁନ ଗଛ ଛାଲ ଉପରେ ବସିଥିବା ଫୁଲ ବା ମଲବକଳା ଗୁଣ୍ଡ ଯେକୌଣସି ବଡ଼ଧରଣ ଘା'କୁ ଶୁଖାଇବାରେ ସାହାଯ୍ୟ କରେ । ଅର୍ଜ୍ଜୁନ ଛାଲର ସିଝାପାଣି ମୁଖ ଦୁର୍ଗନ୍ଧ ଦୂରକରେ । ଅର୍ଜ୍ଜୁନ ଛାଲ, ବଉଳ ଛାଲ, ଖଇଁରସ ସିଝାପାଣି ଅଳ୍ପ ଉଷ୍ମ ଥାଇ ଯଦି ଦିନକୁ ୩।୪ ଥର କୁଳି କରାଯାଏ, ତେବେ ବହୁ ଦିନର ଦନ୍ତ (ପାଏରିଆ) ଭଲ ହୋଇଥାଏ । ଅର୍ଜ୍ଜୁନ ଫୁଲ ଓ ପତ୍ର ଗୋ, ମହିଷାଦି ପ୍ରାଣୀଙ୍କ ଅନେକ ରୋଗରେ ଅବ୍ୟର୍ଥ ଔଷଧ ଅଟେ । ଏହାର ଛାଲର କ୍ୱାଥ୍ ଆମ୍ବବାତ ରୋଗପାଇଁ ବ୍ୟବହୃତ ହୁଏ ।

**୫- ଅଶୋକ**—ଆମର ବହୁକାଳର ପ୍ରଥା ବୈଶାଖ ମାସ ଅଶୋକାଷ୍ଟମୀ ତିଥିରେ ଅଶୋକ କଢ଼ି ଖାଇଲେ ବର୍ଷ ତମାମ ଶୋକ ରହେ ନାହିଁ । ତେଣୁ ଅଶୋକ କଢ଼ି ପ୍ରତିବଦଳରେ କରି ଖାଇ ଆଗେ ଅଶୋକା ବସୁଥିଲେ । ମାତ୍ର ବର୍ତ୍ତମାନ ହାଏ, ହ୍ୟାଲୋ ସମୟରେ ସେ ଅଶୋକା ବସିବା ପରମ୍ପରା ବୁଡ଼ିଯିବା ସହ ଅଶୋକ ବୃକ୍ଷ ମଧ୍ୟ ବିଲୋପ ହେଲାଣି । ସୀତାଙ୍କର ବନ୍ଧ୍ୟା ଦୋଷ ଦୂରିକରଣ ପାଇଁ ରାବଣ ଅଶୋକ ବନରେ ତାଙ୍କୁ ରଖିଥିଲେ ବୋଲି କିମ୍ବଦନ୍ତୀ ଅଛି । ତେଣୁ ଏଲୋପାଥି,

ହୋମିଓପାଥି ଏବଂ ଆୟୁର୍ବେଦିକ ପ୍ରଣାଳୀରେ ସ୍ତ୍ରୀରୋଗ ପାଇଁ ଅଧିକାଂଶ ଔଷଧ ଅଶୋକ ଗଛରୁ ହିଁ ତିଆରି ହୋଇଥାଏ । ସ୍ତ୍ରୀଙ୍କର ରକ୍ତପ୍ରଦର ଜନିତ ଅସହ୍ୟ ଯନ୍ତ୍ରଣାରେ ୨୫ ଗ୍ରାମ ଅଶୋକ ଛାଲକୁ ପାଏ କଞ୍ଚା କ୍ଷୀରରେ ବାଟି ପାଣିପାଏ ମିଶାଇ ସିଝାଇ କେବଳ କ୍ଷୀରଅଂଶ ରହିଲେ ଓହ୍ଲାଇ ଚିନିମିଶାଇ ଖାଇବ ଦିନକୁ ୨ ଥର । ସେହିପରି ଶ୍ୱେତ ପ୍ରଦର ବା ଧଳା ସ୍ରାବରେ ୨୫ ଗ୍ରାମ ଅଶୋକକଢ଼ି, ୧୦ ଗ୍ରାମ ଶ୍ୱେତଦୂବ ଓ ୫ଟି ଗୋଲମରିଚ ବାଟି ପିଇଲେ ଏହା ନିଶ୍ଚିତ ଭଲ ହୋଇଥାଏ । ଫୁଲ ବ୍ୟବସାୟ ମଧ୍ୟରେ ଅଶୋକ ଏକ ସଫଳ ଫୁଲ, ଏତଦ୍ ଭିନ୍ନ ଏହାର ଛାଲକୁ ସଂଗ୍ରହ କରି ଔଷଧୀୟ କମ୍ପାନୀମାନଙ୍କୁ ବିକ୍ରୀ କରିଯାଇ ପାରିବ ।

**୭- ବଉଳ**—ବଉଳ ଏକ ସବାଗର ଫୁଲ । ବଉଳ ମାଳା ଶାଶ୍ୱତ ପ୍ରେମର ନିଦର୍ଶନ । କଦମ୍ବ ଓ ବଉଳ ରାଧାକୃଷ୍ଣଙ୍କ ପ୍ରିୟଥିବା ଦିନରୁ ଆଜି ପର୍ଯ୍ୟନ୍ତ ପ୍ରେମି ଯୁଗଳଙ୍କ ପାଇଁ ବଉଳ ଏକ ନିଆରା ସ୍ୱାକ୍ଷର ବହନ କରି ଆସୁଛି । ଦେଉଳ ବେଢ଼ାରେ ବଉଳ ଗଛଟିଏ ନଥିଲେ ସତେ ଯେମିତି ଦେଉଳ ଅଧୁରା ରହିଯାଏ । ମାତ୍ର ସବୁଥିରେ ଆଜି ପରିବର୍ତ୍ତନ । ବଉଳ ଗଛଟିଏ ଦେଖିବା ସ୍ୱପ୍ନ । ସେଇ ସମସ୍ତ ସ୍ୱପ୍ନରୁ ବାସ୍ତବତା ଖୋଜି ବାହାର କରିବା ଶିଳ୍ପଶ୍ରୀର ଲକ୍ଷ୍ୟ ପୂରଣ ପାଇଁ ସମସ୍ତ ପ୍ରତିବନ୍ଧକକୁ ଏଡ଼ାଇବାକୁ ପଡ଼ିବ । ହଲିଲ୍ ଦାନ୍ତ ବସିବା ପାଇଁ ବଉଳ ଛାଲିର ଗୁଣ ଅତ୍ୟନ୍ତ ଉପାଦେୟ । ବଉଳ ଛାଲି, ଶୁଖିଲ୍ ବଉଳ କୋଳକୁ ଗୁଣ୍ଡକରି ଦାନ୍ତ ମୂଳରେ ଯାକିଲେ ହଲୁଥିବା ଦାନ୍ତ ବସିଯାଏ । କଅଁଳିଆ ବଉଳପତ୍ର ସାମାନ୍ୟ ଲୁଣ ମକଚି ସେ ରସ ସୂର୍ଯ୍ୟ ଉଦୟ ପୂର୍ବରୁ ନସ୍ୟନେଲେ ବହୁ ପୁରାତନ ମୁଣ୍ଡବିନ୍ଧା, ସୂର୍ଯ୍ୟାବର୍ତ୍ତିକ କପାଳ ବ୍ୟଥା (ସାଇନୋସାଇଟ୍) ଭଲ୍ ହୁଏ । ପାଚିଲ୍ ବଉଳକୋଳି ପିଲ୍ ମାନଙ୍କର ସୁଖାଦ୍ୟ । ବଉଳ କୋଳିର ମଞ୍ଜି ସଂଗ୍ରହ କରି,ବେତ ବା ବରକୋଳି ମଞ୍ଜି ପରି ବିକ୍ରୀ ମଧ୍ୟ କରିହେବ ।

**୭-ଗମ୍ଭାରୀ**—ଆମେ ସମସ୍ତେ ଗମ୍ଭାରୀ ଗଛକୁ ଚିହ୍ନୁଛେ । ଘରର ସୌଖିନ ଦ୍ରବ୍ୟ କରିବା ପାଇଁ ଗ୍ରାମାଞ୍ଚଳରେ ଗମ୍ଭାରୀର ଚାହିଦା ବହୁ ଅଧିକ । ଆମେ ସମସ୍ତେ ଗମ୍ଭାରୀ କାଟି, ହାଣିବା ପାଇଁ ବ୍ୟଗ୍ର । କେହି ଜଣେ ଗମ୍ଭାରୀ ଗଛଟିଏ ରୋପଣ କରିବାକୁ ବ୍ୟସ୍ତ ନୁହେଁ । ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ରୋପଣ କରାଯାଉଥିବା ବୃକ୍ଷ ମାନଙ୍କ ମଧ୍ୟରେ ଗମ୍ଭାରୀକୁ ଅଗ୍ରାଧିକାର ଦିଆଯିବା ସୁଖର ସୂଚନା । କାଠ ଦୃଷ୍ଟିକୋଣରୁ ଏହା ଏକ ବହୁ ମୂଲ୍ୟବାନ କାଠ ଓ ଏହାର ଆକାର ବଡ଼ । ମହୁଲ ସହ ଗମ୍ଭାରୀ ଫଳ ମିଶାଇ କିଛିଦିନ ଖାଇଲେ ମଧୁମେହ ରୋଗ କମି-ଯାଏ । ପୋକଶୁଙ୍ଘା ମୂଳସହ ଗମ୍ଭାରୀ ଚେରକୁ ଛୋଟ ଛୋଟ ଖଣ୍ଡକରି ପାଣିରେ ପକାଇ ପିଇବାଇଲେ ତୃଷାରୋଗ କମିଯାଏ । ଗମ୍ଭାରୀ ଛେଲି ଦଶମୂଳ ପାଞ୍ଚନର ଏକ ଅଂଶ ବିଶେଷ । ବ୍ୟକ୍ତିଗତ ବ୍ୟବହାର ପାଇଁ ଯେପରି ଭାବେ ଗମ୍ଭାରୀର ବ୍ୟବହାର ଚାଲିଛି ଯଦି ଏବେଠାରୁ ଏହାର ପୁନରୋପଣ କରା ନଯାଏ ତେବେ ଏହି ଗଛ ଦେଖିବା ମଧ୍ୟ ସ୍ୱପ୍ନ ହୋଇ ଯିବ ।

**୮- ହରିଡ଼ା**—ଆମର ପ୍ରବାଦ ଅଛି ହରିଡ଼ା ସକଳ କାର୍ଯ୍ୟରେ ଲୋଡ଼ା । ହରିଡ଼ା ଗଛର ଛାଲି, ହରିଡ଼ା ଫଳ ବହୁ ଉପାଦେୟ । ତ୍ରିଫଳାର ଅନ୍ୟ ଏକ ଅନନ୍ୟ ଅଂଶ ବିଶେଷ ହରିଡ଼ା । ସାଧାରଣ ଗଛଟିଏ ଲଗାଇବା ଅପେକ୍ଷା ଯଦି ହରିଡ଼ା ଗଛଟିଏ ରୋପଣ କରା ଯାଆନ୍ତା ତେବେ ସାଧାରଣ ଭାବେ ଏହାର ଫଳମଧ୍ୟ ସଂଗ୍ରହ କରି ଦରିଦ୍ର ସୀମାରେଖା ତଳେ ଥିବା ଲୋକମାନେ କିଛି ଅର୍ଥ ଉପାର୍ଜନ କରି ପାରନ୍ତେ ।

**୯- ବାହାଡ଼ା**—ହରିଡ଼ା ପରି ପ୍ରତ୍ୟେକ ପ୍ରକାର ମୃତ୍ତିକାରେ ବାହାଡ଼ା ଗଛ ହୋଇଥାଏ ଓ ପ୍ରଚୁର ଫଳଥାଏ । ଏହାର ଔଷଧୀୟ

ଗୁଣ ପାଇଁ ଏହା ସବୁବେଳେ ବଜାର ପ୍ରସ୍ତୁତ କରିବାକୁ ପଡ଼ିନଥାଏ । କିନ୍ତୁ ଫଳର ସ୍ଥାୟୀ ବଜାର ରହିଅଛି । ଅନେକ ରୋଗ ଆରୋଗ୍ୟ କରିବା ସହ ଏହା ମଧ୍ୟ ଏକ ଅର୍ଥ ଉପାର୍ଜନକାରୀ ଫଳ ।

**ଅଁଳା**—ଧାତ୍ରୀ ନାମରେ ପରିଚିତ ଏହି ଦେବ ବୃକ୍ଷଟି କେତୋଟି ମଠ, ବାଡ଼, ଦେବାଳୟ ଛାଡ଼ିଦେଲେ ଅନ୍ୟତ୍ର ଦେଖିବା ବିରଳ । ବହୁ ଗୁଣର ଅଧିକାରୀ ହେତୁ ଆଜିର ବଜାରରେ ଅଁଳାର ସବୁଠାରୁ ଅଧିକ ଆବଶ୍ୟକତା ରହିଛି । ଆମେ ସମସ୍ତେ ଚ୍ୟବନପ୍ରାଶର ନାମ ଊଣା-ଅଧିକେ ଶୁଣିଛେ ଓ ଜାଣିଛେ । ମାତ୍ର ଏହି ଚ୍ୟବନପ୍ରାଶ ପ୍ରସ୍ତୁତିର ମୁଖ୍ୟ ଦ୍ରବ୍ୟଟି ଅଁଳାବୋଲି ପ୍ରାୟ ଖୁବ୍ କମ୍ ଲୋକ ଜାଣିଥିବେ । ଅନ୍ୟସବୁ ଦ୍ରବ୍ୟ ୪୦ ଭାଗରେ କେବଳ ଅଁଳା ୬୦ ଭାଗ ମିଶ୍ରଣରେ ଚ୍ୟବନପ୍ରାଶର ପ୍ରସ୍ତୁତି । କାଲିଫର୍ଣ୍ଣିଆରେ ଏକ ସରକାରୀ ସଂସ୍ଥାଦ୍ୱାରା ପରୀକ୍ଷା କରି ଦେଖା ଯାଇଛି ଯେ ୮ ଗୋଟି ସେଓ ଫଳଦ୍ୱାରା ଶରୀରକୁ ଯେତିକି ଊର୍ଜା ବା ଶକ୍ତି ମିଳିଥାଏ ଗୋଟିଏ ଅଁଳା କୋଳିରୁ ଆମେ ସେତିକି ଶକ୍ତି ପାଇଥାଉ । ପାନ ବା ତମାଖୁ ସେବନ କରୁଥିବା ବ୍ୟକ୍ତି ବିଶେଷ ଉକ୍ତ ବଦଭ୍ୟାସ ପରିତ୍ୟାଗ କରିବା ପାଇଁ ଅଁଳା କୋଳିରୁ ପ୍ରସ୍ତୁତ ବିଭିନ୍ନ ପ୍ରକାର ମୁଖରୋଚକ ବହୁଳ ଭାବେ ପ୍ରସିଦ୍ଧି ଲାଭ କରିଅଛି । ଅଁଳାରୁ ତ ଅନେକ ଔଷଧ ପ୍ରସ୍ତୁତ ହୋଇ ପାରିବ । ମୁଖ୍ୟତ କାଶ, ଅମ୍ଳଦୋଷ ପ୍ରଭୃତି ପାଇଁ ଅଁଳାକୁ ଶୁଖିଲା ବା କଞ୍ଚା ପାଟିରେ ଜାକି ଚୋବାଇ ଖାଇଲେ ବହୁ ସୁଫଳ ମିଳିଥାଏ । ହରିଡ଼ା ଓ ଅଁଳାର ବତୁରା ପାଣି ମୁଣ୍ଡରେ ମାରି ଅଧଘଣ୍ଟା ପରେ ଧୋଇ ଘଣି (ଖସା) ତେଲରେ ୨୧ ଦିନ ଆଗରୁ ପଡ଼ିଥିବା ବା ପାକ ଅଁଳାତେଲ ଲଗାଇଲେ ମୁଣ୍ଡରୁ କେଶ ଝଡ଼ିବା କମିବା ସହ ଅକାଳ ପକ୍ୱତା ଦୂରହୁଏ । ଏହା ସହିତ ସକାଳୁ କିଛି ଫଳା ବତୁରା ପାଣି ପିଇବା ଆବଶ୍ୟକ । ଅଁଳାଚୂଲ, କଳରା ପତ୍ର ଓ ଦାସ କେରଣ୍ଡା ପତ୍ର ସମାନ ମାତ୍ରାରେ ଶୋରିଷ ତେଲରେ

ଘୂଷାଇ ଭଲଭାବେ ପାଣି ଅଂଶ ମାରିବ। ପରେ ରଖି ସେ ତେଲକୁ ଅଳ୍ପ ଉଷୁମ କରି ଯେଉଁପଟ ଦାନ୍ତ ପୋକ କାଟୁଥିବ ସେଇପଟ କାନରେ ପକାଇଲେ ଦାନ୍ତ ପୋକକାଟିବା ଭଲହୁଏ ।

ଶୁଖିଲା ଅଁଳାକୋଳ କଲେପ୍ରତି ୧୦ ରୁ ୧୮ ଟଙ୍କା ମୂଲ୍ୟର ଦାମରେ ବିକ୍ରୀ ହେଉଅଛି । ଆବଶ୍ୟକ ଲୋକ ଏହାକୁ ସଂଗ୍ରହ କରି ବେଶ୍ ଦୁଇ ପଇସା ରୋଜଗାର କରି ପାରନ୍ତି ।

**୧୧- ଅଶ୍ୱତ୍ଥ**—ଓସ୍ତ ଗଛ ସବୁଠାରେ ଦେଖାଯାଏ । ମାତ୍ର ଏହାର ରୋପଣ ବିଧିପୂର୍ବକ ହୁଏନାହିଁ । ଶାସ୍ତ୍ର କିନ୍ତୁ ବୃକ୍ଷମାନଙ୍କ ମଧ୍ୟରେ ଅଶ୍ୱତ୍ଥକୁ ସର୍ବାଗ୍ରେ ମାନ୍ୟତା ଦେଇଛି । ଅଶ୍ୱତ୍ଥଚ୍ଛେଦ, ପିତୃମାତୃହନ୍ତ. ଗୋବିଜହନ୍ତା, ପରଦାରସେବ ନମୁଚ୍ୟତେ ପାପ ସପ୍ତ ଯୁଗାଣି । ଅଶ୍ୱତ୍ଥ ବୃକ୍ଷ ଛେଦନ କଲେ ସର୍ବଶ୍ରେଷ୍ଠ ପାପ ହୁଏବୋଲି ଶାସ୍ତ୍ରରେ ବର୍ଣ୍ଣନା କରାଯାଇଛି । କାରଣ ଓସ୍ତଗଛ ଏକମାତ୍ର ଗଛ ଯିଏ ସୂର୍ଯ୍ୟାସ୍ତ ପରେ ମଧ୍ୟ ଅମ୍ଳଜାନ ପ୍ରସ୍ତୁତ କରିଥାଏ । ତେଣୁ ପରିବେଶର ଆଶାବାଡ଼ି କହିଲେ ଅତ୍ୟୁକ୍ତି ହେବନାହିଁ ।

**୧୨- ଗୁଡ଼ୁଚି**—ଅଳ୍ପ ଉଚ୍ଚ (ପ୍ରାୟ ୭ ମିଟର) ମଧ୍ୟମ କିସମର ଗଛ ଗୁଡ଼ୁଚି ଗଛ । ଏହାର ବକଳ ସଂଗ୍ରହ କରାଯାଏ । ଶରୀରର ରୋଗ ପ୍ରତିରୋଧକ ଶକ୍ତି ବୃଦ୍ଧିରେ ଏହା ସାହାଯ୍ୟ କରିଥାଏ । କ୍ଷୟ, କାଶ, ଅର୍ଶ ପ୍ରଭୃତି ରୋଗ ଏହାର ବ୍ୟବହାରରେ ଭଲ ହୋଇଥାଏ । ନାଗେଶ୍ୱର ଓ ଲଣ୍ଡିବଗୁଲି ମଞ୍ଜି ସହ ଗୁଡ଼ୁଚି ମିଶାଇ ଖାଇଲେ ପୁରାତନ ରୋଗ ନିର୍ମୂଳ ହେବାସହ ଶରୀରର କାନ୍ତୀ ବୃଦ୍ଧି ପାଇଥାଏ ।

ଅଁଳା ପରି ଗୁଡ଼ୁଚିର ସ୍ଥାୟୀ ବଜାର ରହିଅଛି । ଗୁଡ଼ୁଚିର ବକଳ କଲେପ୍ରତି ୮୦ ଟଙ୍କାରୁ ଊର୍ଦ୍ଧ୍ୱ । ଗୋଟିଏ ସାଧାରଣ ଗଛର

ବୃକ୍ଷ ପ୍ରସ୍ତୁତ କରିବାରେ ଯେତିକି ଖର୍ଚ୍ଚ ଓ ବଞ୍ଚେଇ ରଖିବାରେ ଯେତିକି ଆବଶ୍ୟକତା ସେତିକି ଆବଶ୍ୟକତା ମଧ୍ୟରେ ଏପରି ବୃକ୍ଷମାନ ହୋଇ ପାରିବ । ଅନ୍ୟ ଯେକୌଣସି ସାଧାରଣ ବୃକ୍ଷଟିର ପରିବେଶ ଉପରେ ପ୍ରଭାବ ତୁଳନାରେ ଏହାର ପ୍ରଭାବ କିଛି କମ୍ ନୁହେଁ । ଏଗୁଡ଼ିକ ଉପାର୍ଜ୍ଜନ କ୍ଷମ ଗଛ ଅଟନ୍ତି ।

**୧୩-ଡାଲଚିନି**—ଯେକୌଣସି ଭୋଜଭାତ ହେଲେ ଆମେ ଡାଲଚିନି ରାନ୍ଧିବାରେ ବ୍ୟବହାର କରିଥାଉ । ମାଂସ, ପଲଉଠାରୁ ଆରମ୍ଭ କରି ଡାଲମା ପର୍ଯ୍ୟନ୍ତ ଯେପରି ଡାଲଚିନି ନପଡ଼ିଲେ ଆମ୍ଭ ରୁଚିକି ଖାଦ୍ୟ ହୁଏ ନାହିଁ । ଡାଲଚିନି ସହିତ ଆମେ ବାସ୍ନାପାଇଁ ପକାଇ ଥାଉ ତେବେ ପ୍ରକୃତ ଏହା ରକ୍ତ ବିଶୋଧକ ଅଟେ । ଏହା ପରିପାକ କ୍ରିୟାରେ ସାହାଯ୍ୟ କରିଥାଏ । ଆମ ଜଳବାୟୁ ଓ ମୃତ୍ତିକାରେ ଡାଲଚିନି ଗଛ ଖୁବ୍ ଭଲ ବଢ଼ିପାରୁଛି ଓ ହେଉଛି ମଧ୍ୟ । ସରକାର ତାଙ୍କର କେତୋଟି ଫାର୍ମରେ ଏହାକୁ ରୋପଣ କରି ବ୍ୟବସାୟ ଭିତ୍ତିରେ ଭଲ ଲାଭବାନ ହେଉଥିଲେ ହେଁ ଏହାକୁ ବୃକ୍ଷ ରୋପଣରେ ସାମିଲ୍ ନକରିବା ବଡ଼ ଆଶ୍ଚର୍ଯ୍ୟର କଥା । ସାଧାରଣ ବଜାରରେ ଡାଲଚିନି କେଜିପ୍ରତି ୮୦ ରୁ ୧୨୦ ଟଙ୍କା ପର୍ଯ୍ୟନ୍ତ ବିକ୍ରୀ କରାଯାଉଛି । ବର୍ତ୍ତମାନ ଆମ ପ୍ରଦେଶରେ ଡାଲଚିନିର ଚାହିଦା ଆମଦାନି ଠାରୁ ଅଧିକ । ଆକାଶିଆ ପରି ଗଛଟିଏ ନଲଗାଇ ଆମେ ଯଦି ଡାଲଚିନି ଗଛଟିଏ ଲଗାନ୍ତେ ନିଶ୍ଚୟ ବହୁ ଉପକାର ହୁଅନ୍ତା ।

**୧୪-ତେଜପତ୍ର**—ଅନେକ ଲୋକ ତେଜପତ୍ର ଗଛ ନିଜ ବାଡ଼ିରେ ଲଗାଇଲେଣି । ଡାଲଚିନି ଓ ତେଜପତ୍ରର ପତ୍ର ପ୍ରାୟ ଏକାପରି । ଝାମ୍ପୁରିଆ ଗଛମାନେ ଝଙ୍କାଳିଆ ପତ୍ର ଗହଳରେ ବେଶ୍ ସୁନ୍ଦର ଦିଶନ୍ତି । ସମସ୍ତ ପ୍ରକାର ଖାଦ୍ୟ ପଦାର୍ଥରେ ହଳଦି ସହିତ ଆମେ ତେଜ

ପତ୍ର ପକାଇ ଥାଉ । ଏହା କଫ ଓ ପିତ୍ତ ନାଶକ । ଏହାର ଗଛରା ପ୍ରାୟତଃ ସାଧାରଣ ଭାବେ ମିଳିଥାଏ । କେବଳ ଲଗାଇବା ପାଇଁ ଏକ ପ୍ରବୃତ୍ତି ସୃଷ୍ଟି କଲେ ଏହାର ବିଶେଷ ରୋପଣ ହୋଇ ପାରନ୍ତା । ତେଜ-ପତ୍ର ଆମଦାନି ଉପରେ ଏହାର ଦାମ ହୋଇଥାଏ । ବର୍ତ୍ତମାନରୁ ୮ ରୁ ୧୬ ଟଙ୍କା ପର୍ଯ୍ୟନ୍ତ ଏହାର ଦାମ ରହିଅଛି । ଏଣୁ ଏହାକୁ ରୋପଣ କରାଇ ପରିବେଶ ସନ୍ତୁଳନ ରକ୍ଷା କରିବା ସହ ରୋଜଗାରକ୍ଷମ ହୋଇ ପାରନ୍ତେ ।

**୧୫- ଭାଲିଆ**—ଗୋଟିଏ କୃଷ୍ଣଚୂଡ଼ା ବୃକ୍ଷ ରୋପଣ ପାଇଁ ଯେତିକି ଗୁରୁତ୍ୱ ଦିଆ ଯାଉଛି ସେତିକି ବହୁ ଆବଶ୍ୟକୀୟ ଔଷଧ ବୃକ୍ଷଟି ବଣ ଜଙ୍ଗଲରେ ତାର ମନକୁ ଉଠୁଛି ନଚେତ୍ ନାହିଁ । ଭାଲିଆର ମୂଳ ତତ୍ତ୍ୱରୁ କେତେ ଗୁଡ଼ିଏ ଏଲୋପାଥି ଔଷଧ ପ୍ରସ୍ତୁତ ହେଉଅଛି । ଏତଦ୍ ଭିନ୍ନ ରକ୍ତ ପ୍ରଦର ଓ ଅର୍ଶରୋଗ ପାଇଁ ଏହା ମହୌଷଧି ଅଟେ । ଅର୍ଶ ଯେତେ ପ୍ରବଳ ହୋଇ ଥାଉ ନା କାହିଁକି, ବନ୍ଧା, ରକ୍ତ ପ୍ରଚୁର ପଡ଼ିବା ମଳଦ୍ୱାର ପ୍ରବଳ ଦରଜ ସହ ମଳରୋଧ ହେବା ଲକ୍ଷଣ ଥିବା ବେଳେ, ଭାଲିଆଫଳ ୧ ଟାକୁ ଅଧା ଗୁମଚ ଖସାସହ କଚ୍ଛି ପୁରୁଣା ଗୁଡ଼ରେ ବାଟି ଦିନକୁ ୨ ଥର ଗରମ ପାଣିରେ ଖାଇଲେ ପ୍ରଥମ ଦିନରୁ ହିଁ ଆଶ୍ଚର୍ଯ୍ୟ ଫଳ ମିଳିଥାଏ । ଭାଲିଆ କିଲୋପ୍ରତି ୧୬।୧୮ ଠାରୁ ଆରମ୍ଭ କରି ବେଳେ ବେଳେ ଏହା ୬୦।୭୦ ଟଙ୍କା ପର୍ଯ୍ୟନ୍ତ ବିକି ହୁଏ । ଆଦିବାସୀ ଅଞ୍ଚଳରେ ସରକାର ସେମାନଙ୍କୁ ଶୋଷଣ ମୁକ୍ତ ରଖିବା ନିମିତ୍ତ ଆଦି-ବାସୀ ଉନ୍ନୟନ ସଂସ୍ଥା ଖୋଲିଛନ୍ତି । ସେହି ସଂସ୍ଥା ମାନଙ୍କ ଦ୍ୱାରା ଉକ୍ତ ଦ୍ରବ୍ୟ କିଣି ବଜାରରେ ଉଚିତ୍ ମୂଲ୍ୟରେ ବିକି କରାଇଲେ ଆଦିବାସୀ ଲୋକମାନେ ବହୁତ ଉପକୃତ ହୁଅନ୍ତେ ।

**୧୬- ବରଗଛ**—ବରଗଛର ନାଁଟି ପ୍ରାୟ ସମସ୍ତଙ୍କର ପରିଚିତ । ବିଶେଷତଃ ଗାଁ ମୁଣ୍ଡ ଦଣ୍ଡା ମାନଙ୍କରେ ବରଗଛ ଦେଖିବାକୁ ମିଳେ ।

ଏହା ବୃହତ୍ତିକାଯୁ । ଏହି ଗଛର ଗୁଳିତଳେ ଅନେକ ପଥିକ ବିଶ୍ରାମ ନେଇ ଶ୍ରମ ଲାଘବ କରିଥାଆନ୍ତି । ଆସନ୍ତୁ ଦେଖିବା ଚିର ପରିଚିତ ବରଗଛର ଡ଼ାଳ, ପତ୍ର, ଚେର ଆମର କେଉଁ କେଉଁ ଔଷଧୀୟ କାର୍ଯ୍ୟରେ ସାହାଯ୍ୟ କରୁଛି ।

**ରୋଗ ବିଶେଷ**—ବର କଷାୟ ରସ,ଶୀତଳ,ଧାରକ, ଗୁରୁପାକ ରସାୟନ, କାନ୍ତିପ୍ରଦ, ସ୍ତମ୍ଭନ କାରକ, ମେହ, ପ୍ରମେହ ଉପଦଂଶ, ବର୍ଣ୍ଣଦୋଷ, ଧାତୁ ଦୋଷ, ପିତ୍ତ, କଫ, ଦାହ, ପ୍ରଦର, ଯୋନିରୋଗ, ବ୍ରଣ, ଘା', ବାଘା, କାଖଗୁଳି ପ୍ରଭୃତି ରୋଗର ନିବାରକ ଅଟେ ।

**ପ୍ରୟୋଗ ବିଧି**—ବରକ୍ଷୀର ବହୁମୂତ୍ର ରୋଗ ପାଇଁ ଉପଯୋଗୀ । ପ୍ରମେହ ସ୍ୱପ୍ନଦୋଷ ମଧ୍ୟ ଏଥିରେ ଆରୋଗ୍ୟ ହୋଇଥାଏ । ବରକ୍ଷୀର ସାଙ୍ଗରେ ହଳଦୀ ରସ ଅଥବା ହଳଦୀଗୁଣ୍ଡ ମିଶାଇ ସାତଦିନ ପର୍ଯ୍ୟନ୍ତ ଦୁଇବେଳା ସେବନ କଲେ ଉପରୋକ୍ତ ରୋଗରୁ ଉପଶମ ମିଳେ ।

କାଖଗୁଳି, ବ୍ରଣ, ବିଥ, ବାରମୂଳିଆ,ବାଗୀ ଇତ୍ୟାଦିରେ ଉଠିଲା ମାତ୍ରକେ ସାଦା କାଗଜରେ ବରକ୍ଷୀରକୁ ଦେଇ ଉଠିଥିବା ବିଥ ଆଦିରେ ଲଗାଇ ଦେଲେ ବସିଯାଏ ।

ବରକ୍ଷୀର ଶୁକ୍ରବୃଦ୍ଧିକାରକ । ବରକ୍ଷୀର ସାଙ୍ଗରେ ମିଶ୍ରିଗୁଣ୍ଡ ମିଶାଇ ପ୍ରତ୍ୟେହ ସେବନ କଲେ ଶୁକ୍ରବୃଦ୍ଧି ହୋଇଥାଏ ।

ବରଛେଲିକୁ ସିଝାଅ । ଥଣ୍ଡାକର । ତା'ପରେ ସେହି ପାଣିକୁ କୁଳିକୁଳି କଲେ ମୁହଁ ଭିତରେ ଥିବା ଘାଆ ଭଲହୁଏ ।

ବର ଓହଳର ମଧ୍ୟ ଅନେକ ସୁଗୁଣ ଅଛି । ଏହା ଦୃଷ୍ଟିବର୍ଦ୍ଧକ ଓ ସ୍ମରଣଶକ୍ତି ବର୍ଦ୍ଧକ ଅଟେ । ଗାଈକ୍ଷୀର ସାଙ୍ଗରେ ବର ଓହଳକୁ ବାଟିଖାଇଲେଶରୀର ପୁଷ୍ଟ ହୁଏ ଓ ସ୍ମରଣ ଶକ୍ତିର ବୃଦ୍ଧି ଘଟେ ।

ବରଗଛଲ ଆହୁର ମଧ୍ୟ ଉପକାରରେ ଲାଗେ । ସୋରିଷ ତେଲ ସାଙ୍ଗରେ ବରଗଛଲକୁ ପାକ କରି ଗୁଣିବଅ । ଦେହରେ ହୋଇଥିବା କାଛୁ, ବ୍ରଣକ୍ଷତ ସ୍ଥାନରେ ଲଗାଅ । ନିଶ୍ଚୟ ସୁଫଳ ମିଳିବ ।

**ବ୍ୟବସାୟିକ ଆବଶ୍ୟକତା**—ଏହି ପରିପ୍ରେକ୍ଷୀରେ ବରଗଛ ସଂଖ୍ୟା ବୃଦ୍ଧି ଆମ୍ଭମାନଙ୍କର କର୍ତ୍ତବ୍ୟ । ଏହା ଅବଶ୍ୟ ବେଶୀକିଛି କଷ୍ଟ ଦାୟକ ନୁହେଁ । ସ୍ୱତଃ ପ୍ରକୃତିର ନିୟମାନୁସାରେ ବରଗଛ ଉଠିଥାଏ । କିନ୍ତୁ ଯତ୍ନଶୀଳ ମନୋବୃତ୍ତିରେ ସମୟ ଦେଇ ଏହି ଉପାଦେୟ ବୃକ୍ଷଟିର ନିୟମିତ ରୋପଣ ଓ ରକ୍ଷଣା ବେକ୍ଷଣ କଲେ ମଣିଷ ସମାଜରେ ଏହାର ପ୍ରୟୋଗ ମାତ୍ରାଧିକ ହେବ । ବରଓହଲ ସଂଗ୍ରହକରି ବଜାରରେ ଆୟୁର୍ବେଦୀୟ ଔଷଧ ତିଆରି କରୁଥିବା ଚେରମୂଳ ଦୋକାନ ମାନଙ୍କରେ ବିକି ମଧ୍ୟ ଦୁଇପଇସା ଆୟ କରିହେବ ।

**୧୭-ତାଳ ମୂଳୀ**—ଏହା ଦେଖିବାକୁ ତାଳଗଛର ପଞ୍ଝପରି । ମାତ୍ର ଏହାର ମୂଳ ଭୂମିରେ ଥାଏ । ଏହା ଦୁଇ ପ୍ରକାର । କେତେକ କଳାମୂଳଯୁକ୍ତ ଓ କେତେକ ଧଳାମୂଳଯୁକ୍ତ । କଳାମୂଳଥିବା ତାଳମୂଳୀକୁ କଳାମୂଷଳୀ ଓ ଧଳା ମୂଷଳୀ କୁହାଯାଏ । ଏହି ତାଳମୂଳୀର ଅନେକ ଔଷଧୀୟ ଗୁଣ ଅଛି । ଯଥା—ମେହ,ଧାତୁଦୋଷ, ଶୁକ୍ରହୀନତା ଧ୍ୱଜଭଙ୍ଗ, କ୍ଳୀବତା, ରକ୍ତ ବିକୃତ ପାଇଁ ଔଷଧ ରୂପେ ବ୍ୟବହୃତ ହୁଏ । ଏଥିପାଇଁ ତାଳମୂଳୀକୁ ଶୁଖାଇ ଚୂନା ଓ କଚ୍ଛ ମିଶ୍ରି ଗୁଣ୍ଡ ମିଶାଇ ପ୍ରତ୍ୟେହ ଖାଇସାରିବା ପରେ ଖାଇଲେ ଉପରୋକ୍ତ ରୋଗରୁ ଉପଶମ ମିଳେ । ଶରୀରର କାନ୍ତି ବର୍ଦ୍ଧିତ ହୁଏ ।

କଞ୍ଚା ଗାଈ ଦୁଗ୍ଧ ସାଙ୍ଗକୁ ତାଳମୂଳୀ ଚୂର୍ଣ୍ଣ ଅଳ୍ପ ମାତ୍ରାରେ ଅର୍ଥାତ୍ ଦୁଇଅଣା ପରିମାଣରେ ପିଲାମାନଙ୍କୁ ସେବନ କରାଇଲେ ମନେ ରଖିବାପାଇଁ ସାମର୍ଥ ବଢାଇଥାଏ ।

ଉଷ୍ମଜଳ ସହିତ ତାଳମୂଳୀ ଚୂନା ଟୋକେ ଦୁଇବେଳା ଖାଆନ୍ତୁ । ଆପଣଙ୍କର ଧାତୁକ୍ଷୟ ଜନିତ ଯାବତୀୟ ଚର୍ମରୋଗ ଦୂରହେବ ।

ତାଳମୂଳୀକୁ ଘୋରି ଗ୍ରୀଷ୍ମ ପିଲାମାନଙ୍କ ମୁଣ୍ଡରେ ଚନ୍ଦନଟୋପା ପ୍ରାୟ ଲଗାଇଲେ ଦୃଷ୍ଟିଦୋଷ ଦୂର ହୁଏ ।

**ବ୍ୟବସାୟିକ ପ୍ରୟୋଗ**—ବ୍ୟବସାୟୀକ ଦୃଷ୍ଟିରୁ ଯଦି ତାଳମୂଳୀ ବିଭିନ୍ନ ଖାଲି ପଡ଼ିଥିବା ସ୍ଥାନରେ ରୋପଣ କରାଯାଏ କିମ୍ବା ସ୍ୱତଃ ଉଠିଥିବା ଗଛ ଗୁଡ଼ିକର ଯତ୍ନ ନିଆଯାଏ, ତେବେ ସମାଜରେ ଅନେକାଂଶରେ ଧନ ଦରିଦ୍ର ଶ୍ରେଣୀର ଲୋକମାନେ ବିନା ପଇସାରେ ବିଭିନ୍ନପ୍ରକାର ରୋଗରୁ ଉପଶମ ପାଆନ୍ତେ । ଅବଶ୍ୟ ଏଥିପାଇଁ ପରିଶ୍ରମ ଓ ଉଦ୍ୟମର ଆବଶ୍ୟକ ରହିଛି ।

**୧୮-ସଜନା**—ସଜନା ଗଛକୁ କିଏ ନ ଜାଣେ ! ପ୍ରାୟ ସମସ୍ତଙ୍କ ବାଡ଼ିଆଡେ ବିଶେଷତଃ ଗାଁ ଗହଳି ଘରମାନଙ୍କରେ ଏହା ଦେଖିବାକୁ ମିଳେ । ଏହାର ପତ୍ର ଶାଗ ଆକାରରେ ଖିଆଯାଏ । ଛୁଇଁ ମଧ୍ୟ ଭଜା, ତରକାରୀ କରି ଖାଇବାକୁ ହୁଏ । ହେଲେ ଔଷଧୀୟ ଗୁଣ ଦୃଷ୍ଟିରୁ ସୁଲଭ ସଜନା ଗଛଟି ଏକ ଉପାଦେୟ ବୃକ୍ଷ ।

**ପ୍ରକାର ଭେଦ**—ଏହା ଦୁଇ ପ୍ରକାର । ଗୋଟିଏ ଧଳା ଓ ଅନ୍ୟଟିର ଚେ଼ଙ୍ଗା ସାମାନ୍ୟ ନାଲି । ତେଣୁ କେତେକ ଧଳାକୁ ସଜନା ଓ ରକ୍ତ ଜାତକୁ ମୁଗୁନା ବୋଲି କହିଥାନ୍ତି ।

**ଔଷଧୀ ଓ ପ୍ରୟୋଗ ବିଧି**—ସଜନାର ମଞ୍ଜିକୁ ଶୁଖାଇ ଚୂନା କରି ନାକରେ ଶୁଙ୍ଘିଲେ,ଅଧାକପାଳୀ ଓ ପୁରାତନ ମୁଣ୍ଡବିନ୍ଧା ଭଲହୁଏ ।

ସଜନା ଛେଲିକୁ ଜଳରେ ଘୋରି ବାତ, ବଥ, ବାରମୂଳିଆ ଆଦିରେ ଦେଲେ ଉପଶମ ମିଳେ ।

ସଜନା ପତ୍ରର ରସ ଓ ଲୁଣ ମିଶାଇ ପୁରାତନ ଯାଦୁ, ନୂତନ ଯାଦୁ, ଅଇଁଠା ଯାଦୁରେ ମାଲିସ କଲେ ଅଳ୍ପଦିନ ମଧ୍ୟରେ ଯାଦୁ ରୋଗ ଦୂରହୁଏ ।

ସଜନା ପତ୍ର ରସକୁ ଉଷୁମକରି ବ୍ୟଥା ବା ବାତ ସ୍ଥାନରେ ମାଲିସକଲେ ଶୀଘ୍ର ଭଲ ହୋଇଥାଏ ।

ଲୌହମଳ ସଜନା ଛେଲି ଏ ଦୁଇ ପ୍ରକାର ଦ୍ରବ୍ୟକୁ ଏକତ୍ର ବାଟି ଦିଅନ୍ତୁ । ବଇଁଶ, କନ୍ଧା ପ୍ରଭୃତି ସ୍ଥାନ ମାନଙ୍କରେ ଲଗାଇଲେ ଆଶୁ ଆରୋଗ୍ୟ ମିଳେ ।

**ବ୍ୟବସାୟିକ ଲାଭ**—ସଜନାପତ୍ରକୁ ଯେତକ ଆଦର ତା'ଠାରୁ ତା'ର ଛୁଇଁକୁ ଅଧିକ ଆଦର କରାଯାଏ । ବଜାରରେ ସଜନା ଛୁଇଁର ମୂଲ୍ୟ ପ୍ରାୟ ଆପଣ ମାନଙ୍କୁ ଜଣା । ୪ଟା ଛୁଇଁକୁ ୧ଟଙ୍କା । ଯଦି ଆଳସ୍ୟ ତ୍ୟାଗକରି କେବଳ ସଜନା ବଟିଗୁଡ଼ିଏ କରାଯାଏ ତେବେ ଅନୁମାନ ୪ଟି ଛୁଇଁକୁ ଟଙ୍କାଟିଏ ହିସାବରେ ୫୦ ଗଛ ସଜନାରୁ କେତେ ଲାଭ ପାଇବେ । ସବୁବେଳେ ଗୋଟିଏ କଥା ମନେରଖିବା ଉଚିତ୍ ଯେ, ସଂସାରରେ ପ୍ରକୃତିର ଦାନ କୌଣସି ଗୁଣରେ କମ୍ ନୁହେଁ । ଆମେ ତାକୁ ଠିକ୍ କାମରେ ଲଗାଇ ପାରିଲେ ହେଲା ।

**୧୯-ଗୟା ଅଶ୍ୱତ୍ଥ**—ବିସ୍ତୃତ ଶାଖା ପ୍ରଶାଖାଯୁକ୍ତ ବିରାଟ ଆକାରରେ ଗଡଜାତ ଅଞ୍ଚଳରେ ଅଧିକ ଗୟା ଅଶ୍ୱତ୍ଥ ଗଛ ଦେଖିବାକୁ ମିଳେ । ପତ୍ରଗୁଡ଼ିକ ଗୋସାଇଁଜଳ ଗଛର ପତ୍ରପରି ଦେଖାଯାଏ ।

**ଔଷଧୀୟ ଗୁଣ**—ଏହା ମଧୁର କଷାୟ ମିଶ୍ରିତ ତିକ୍ତରସ, ଲଘୁ, ଶୀତବୀର୍ଯ୍ୟ, ଶୁକ୍ର ବର୍ଦ୍ଧକ, ମଳରୋଧକ ଇତ୍ୟାଦି ରୋଗରେ ଦରକାର ପଡ଼ିଥାଏ । ଏହା ବ୍ୟଣିତ ବ୍ରଣ, ମେହ କୁଷ୍ଠ, କଫ, ପିତ୍ତ, ଦାହ, ଶିରପୀଡ଼ା ବାୟୁଦୋଷ ନିବାରକ ଅଟେ ।

**ମାତ୍ରା**—ଦୁଇ ଅଣାରୁ ଆଠଅଣା ପରିମାଣ ସେବନ କରାଯାଏ ।

**ବ୍ୟବହାରିକ ବିଧି**—ଅଗସ୍ତି ଗଛର ପତ୍ର ଓ ଗୟା ଅଶ୍ୱତ୍ଥ ଗଛର ଛେଲି ମିଶାଇ ବାଟି ଗୋରୁଙ୍କ ଦେହରେ ଲେପ ଦେଲେ ଚର୍ମ ରୋଗ ଦୂର ହୁଏ ।

ଏହି ଗଛର ଛେଲି ଜଳରେ ସିଝାଇ ଏହାର ଏକ ଚତୁର୍ଥାଂଶ ଗୁଣିଦିଅ । ୩ମାସ ପର୍ଯ୍ୟନ୍ତ ନିୟମିତ ସେବନ କର । ଏହା କଲେ ବ୍ରଣ, କଣ୍ଡୁ, ଦଦ୍ରୁ, କୁଷ୍ଠ ରୋଗ ଆରୋଗ୍ୟ ହୋଇଥାଏ ।

ଏହା ପିତ୍ତଦୋଷ ନିବାରକ ଅଟେ । ଏହି ଗଛର ପତ୍ରରୁ କ୍ୱାଥ ତିଆରିକରି ମହୁ କିମ୍ବା ମିଶ୍ରି ଗୁଣ୍ଡ ସହ ମିଶାଇ ସେବନ କଲେ କଫ ଓ ପିତ୍ତ ଦୋଷ ଦୂରହୁଏ ।

ଏ ଗଛର ପତ୍ର କଅଁଳିଆ ଦେଖି ଗୋରୁଙ୍କୁ କମ୍ ପରିମାଣରେ ଖାଇବାକୁ ଦେଲେ ଗୋରୁ ଗାଈ ନିରୋଗ ହୋଇଥାଆନ୍ତି ।

ଘା’ ଶୁଖିବା ପାଇଁ ଏହା ଏକ ଉପାଦେୟ ଔଷଧ । ଏହାର ପତ୍ରକୁ ଭଲ ଭାବରେ ଶୁଖାଇ କୁଟି ଚୂନାକରି ସେଥିରୁ ଆବଶ୍ୟକ ପରିମାଣ ଘା’ରେ ପକାଇଲେ କ୍ଷତ ସ୍ଥାନ ଶୁଖିଥାଏ ।

ଏହି ପତ୍ରର ରସକୁ ଗାଁ ଗହଳରେ ବ୍ୟବହାର କରାଯାଇଥାଏ । ବେଳେ ବେଳେ ହାତ ଗୋଡ ଇତ୍ୟାଦି ମାଂସାଳ ଯାଗା ମାନଙ୍କରେ ରକ୍ତଗଡ଼ିଯାଏ ଓ ସେ ସ୍ଥାନ ଫୁଲିଯାଏ । ଏହି ପତ୍ରର ରସକୁ ଭଲକରି ମାଲିସ କଲେ ଅଳ୍ପ ସମୟ ମଧ୍ୟରେ ସେ ଫୁଲା କମିଥାଏ ।

ଏତେ ଗୁଡ଼ଏ ଔଷଧୀୟ ଗୁଣ ଯୁକ୍ତ ବୃକ୍ଷଟିକୁ ଜଙ୍ଗଲରେ ଦେଖି ତାକୁ କାଠ ନ ଭାବ ତା'ର ଯତ୍ନ ତଥା ବଂଶ ବୃଦ୍ଧି ନିମିତ୍ତ ଯତ୍ନବାନ ହେବାରେ ଆମର କ'ଣ କର୍ତ୍ତବ୍ୟ ନୁହେଁ ?

**(୨୦) ବରୁଣ**—ଏହା ମଧ୍ୟମ ଧରଣର ଗଛ । ସାଧାରଣତଃ ବାଡ଼ି ବଗିଚାରେ ଦେଖିବାକୁ ମିଳେ । ଶିମୁଳି ଗଛର ପତ୍ର ସହ ଏହାର ସାମଞ୍ଜସ୍ୟ ପ୍ରାୟତଃ ଦେଖାଯାଏ । ଫଳମଧ୍ୟ କାଗିଜି ଲେମ୍ବୁ ପ୍ରାୟ ଗୋଲ ଓ ଶକ୍ତ । ଜଳାଧାର, ଝରଣା କୂଳରେ ଜନ୍ମ ନେଇଥାଏ । ବରୁଣ ଗଛର ଚେର ଜଳର ଦିଗ ନିର୍ଣ୍ଣୟ କରିଥାଏ । ବରୁଣ ଗଛଥିବା ସ୍ଥାନରେ ପାଣି କେତେ ଗଭୀରରେ ମିଳିବ ଏହାର ଚେରକୁ ଲକ୍ଷ୍ୟ କରି କୁହାଯାଇ ପାରିବ । ଯାହାକି ଏବେ ପ୍ରତ୍ୟକ୍ଷରେ ଦେଖି ମଧ୍ୟ ଆମେ ଜାଣି ପାରୁନାହୁଁ । ଏ ଗଛ ସବୁ ସ୍ଥାନରେ ଥାଏ ଏବଂ ପ୍ରାୟତଃ ସମସ୍ତେ ଭଲରୂପେ ଚିହ୍ନନ୍ତି ।

**ଉପକାରିତା**—ବାୟୁ, କଫ, ଲଘୁପାକ, ଉଷ୍ଣବୀର୍ଯ୍ୟ, ଅଗ୍ନି ବର୍ଦ୍ଧକ, କୃମି, ବାତରକ୍ତ, କୁଷ୍ଠ, ଅଶ୍ମରୀ, ମୂତ୍ରକୃଚ୍ଛ୍ର ଆଦିରେ ବ୍ୟବହୃତ ହୁଏ ।

**ପ୍ରୟୋଗ ବିଧି**—କାନରୁ ପୂଜ ବାହାରି ଦୁର୍ଗନ୍ଧ ହେଉଥିଲେ, କିମ୍ବା କଞ୍ଚାପାଣି ବାହାରି କାନବନ୍ଧା ହେଲେ ବରୁଣ ଗଛର ପତ୍ର ଛେଚି ରସ ବାହାର କରନ୍ତୁ । ଯେତିକି ରସକୁ ସେତିକି ସୋରିଷ ତେଲ ସହ ମିଶାନ୍ତୁ । ତା'ପରେ ନିଆଁରେ ଭଲ କରି ଗରମ କରନ୍ତୁ । କାନକୁ ସୁହାଇଲା ଭଳି ଉଷୁମ ଦେଖି ଦିନକୁ ୨ ଥର ୪ ଦିନ ପର୍ଯ୍ୟନ୍ତ କାନରେ ପକାନ୍ତୁ । କାନପାଚ୍ଛ ରୋଗରୁ ନିଶ୍ଚିତ ଉପଶମ ମିଳିଥାଏ ।

ଦେହରୁ ରକ୍ତ ଗଡ଼ିବା, ବ୍ରଣ, ବାଗୀ ଇତ୍ୟାଦିରେ ମଧ୍ୟ ଏ ଗଛର ଗୁଣ କମ୍ ନୁହେଁ, ବରୁଣ ପତ୍ରରେ କଞ୍ଚା ଜଳ ମିଶାଇ ଭଲକରି ବାଟି ଦିଅନ୍ତୁ । ସେହି ବଟାକୁ ଗୋଡ଼, ହାତ ଫୁଲା ସ୍ଥାନରେ ଲେପ ଦେଲେ ଯନ୍ତ୍ରଣା କମିଥାଏ ଓ ଫୁଲା ମଧ୍ୟ ଦୂର ହୋଇଥାଏ । ବାଗୀ, ବ୍ରଣରେ ମଧ୍ୟ ଲେପ ଦେଲେ ତୁରନ୍ତ ଆରାମ ମିଳିଥାଏ ।

ସାଧାରଣତଃ କେବଳ ପାଦଫୁଲା ସ୍ୱାଭମତ ହେଉଥିଲେ ଏହି ଗଛର ପତ୍ରକୁ ଜଡ଼ା ତେଲରେ ଗରମ କରି ଭଜା ବାନ୍ଧିଲେ ଫୁଲା ଭଲ ହୋଇଯାଏ ।

ବାୟୁ ବିକାର ପାଇଁ ଏହା ଏକ ଅତ୍ୟାବଶ୍ୟକୀୟ ଔଷଧ । ବରୁଣ ଗଛର ଛେଲିକୁ ବାଟି ସେଥିରେ ଗାଈ ଲହୁଣୀ ମିଶାଇ ସେବନ କଲେ (ଥରକୁ ୧ ଗ୍ରାମ୍‌ଚ) ବାୟୁ ବିକାର ଭଲ ହେବା ସଙ୍ଗେ ସଙ୍ଗେ ସବୁ ପ୍ରକାର ପୁରାତନ ଚର୍ମ ରୋଗ, କ୍ଷତ, ବାଗୀ, ବ୍ରଣ ଭଲ ହୋଇଥାଏ ।

ଅଶ୍ମରୀ, ଶୂଳ, ମୂତ୍ରକୃଚ୍ଛ୍ର ପାଇଁ ଏହି ଗଛର ଛେଲି ଦରକାରୀ ଔଷଧ । ଛେଲିକୁ ଜଳରେ ସିଝାଇ କ୍ୱାଥ ତିଆରି କରନ୍ତୁ । ସେଥିରେ ଅଳ୍ପ କଞ୍ଚା ଗୁଡ଼ ମିଶାଇ ରୋଗୀକୁ ଖାଇବାକୁ ଦିଅନ୍ତୁ । ଉପରୋକ୍ତ ରୋଗରୁ ମୁକ୍ତ ପାଇବେ ।

ମୂତ୍ର ରୋଗ ପାଇଁ ବରୁଣ ଗଛର ପତ୍ର ସିଝା ଜଳରେ ଗାଈ ଦୁଧ ଓ ମିଶ୍ରିଗୁଣ୍ଡା ମିଶାଇ କିଛିଦିନ ପାନ କଲେ ମୂତ୍ରରୋଗ ଭଲ ହୁଏ ।

ବରୁଣ ଗଛର ମଞ୍ଜି ଉନ୍ମାଦ ରୋଗ ବା ବୁଦ୍ଧିହୀନତା ପାଇଁ ଅବ୍ୟର୍ଥ ଔଷଧ । ଏହି ଗଛର ମଞ୍ଜି ଯେକୌଣସି ବାରରେ ଆଣି ରୋଗୀ ଧାରଣ କଲେ ଉନ୍ମାଦ ଦୂର ହେବା ସଙ୍ଗେ ସଙ୍ଗେ ପିତ୍ତ ପ୍ରକୋପ ହ୍ରାସ ହୁଏ ।

ସର୍ବୋପରିବେଦୋକ୍ତ ମତରେ ବରୁଣ ଗଛ ନିଜ ବାଡ଼ିରେ ରଖି ବେଦୋକ୍ତମତେ ଧୂପଦୀପ ଦେଇ ଦୈନିକ ପୂଜାକଲେ ମନୁଷ୍ୟ ନିରୋଗ ହୋଇଥାଏ । ବିଶେଷତଃ ଘରର ପୂର୍ବ କିମ୍ବା ଉତ୍ତର ଦିଗରେ ଏହି ଗଛ ରହିବା ଉଚିତ୍ । ପିଲାଙ୍କ ପିତୁଳା ରୋଗ ପାଇଁ ଏହି ଗଛର ମୂଳଙ୍ଗ ଚୂମ୍ବକଭଳି କାମ ଦିଏ । ପୁଷ୍ୟା-ନକ୍ଷତ୍ର ଶନିବାର ଦିନ ମୂଳଙ୍ଗ ସଂଗ୍ରହ କରି ପିତୁଳା ମାରୁଥିବା ପିଲା ଦେହରେ (ହାତରେ ବା ଅଣ୍ଟାରେ) ବାନ୍ଧିଲେ ପିତୁଳା ରୋଗ ଦୂର ହୁଏ ।

ଏଣୁ ବରୁଣ ଗଛ ବ୍ୟବସାୟିକ ଦୃଷ୍ଟିରୁ ନହେଲେ ମଧ୍ୟ ଆମ୍ଭମାନଙ୍କର ନିତ୍ୟ-ନୈମିତ୍ତିକ ଜୀବନ ସଂଗ୍ରାମରେ ନାନାଦି ରୋଗ ବ୍ୟାଧିରୁ ମୁକ୍ତ ନିମିତ୍ତ ଏହା ନିତ୍ୟାନ୍ତ ଦରକାରୀ । ତେଣୁ ପ୍ରତ୍ୟେକ ପରିବାର ଅଳ୍ପ ସମୟ ନଷ୍ଟକରି ବାଡ଼ିରେ ବରୁଣ ଗଛଟିଏ ଲଗାଇବା କର୍ତ୍ତବ୍ୟ ବୋଲି ମନେ କରିବା ଉଚିତ ।

**(୨୧) ଟଭା ଲେମ୍ବୁ**—ଲେମ୍ବୁ କହିଲେ ସାଧାରଣତଃ ସମସ୍ତେ ବୁଝନ୍ତି । କିନ୍ତୁ ଏହାର ପ୍ରକାର ଭେଦ ଅନୁସାରେ ଗ୍ରେଡ଼ ବଡ଼ ଏବଂ ସ୍ୱାଦରେ ମଧ୍ୟ ପାର୍ଥକ୍ୟ ଦେଖାଯାଏ । ଯଥା— କାଗିଜି ଲେମ୍ବୁ, ଟଭା ଲେମ୍ବୁ, କମଳା ଲେମ୍ବୁ ବା କମଳା । ଟଭା ଲେମ୍ବୁ ଗଛ ବଡ଼ ଓ ଫଳ ମଧ୍ୟ ବଡ଼ । କଣ୍ଟା ଯୁକ୍ତ ବୃକ୍ଷ । ଏହିଗଛ ସହିତ ଆମେ ସମସ୍ତେ ପ୍ରାୟ ସୁପରିଚିତ ।

**ଏହାର ଔଷଧୀୟ ଗୁଣ ଓ ପ୍ରୟୋଗ ବିଧି**—ପୁରାତନ ବଧିର ଦୋଷ ପାଇଁ ଟଭା ଲେମ୍ବୁ ରସ ସହିତ ଅଳ୍ପ ମିଶ୍ରୀ ମିଶାଇ କିଛି ଦିନ ସେବନ କଲେ ବଧିରତା ଦୁର ହୁଏ ।

କଞ୍ଚା ଟଭାଲେମ୍ବୁ ରସ, କଞ୍ଚା ମହୁ ଓ ମିଶ୍ରି ମିଶାଇ ସେବନ କଲେ କାଶ, ଶ୍ୱାସ, ଅରୁଚି, ଦାହ, ତୃଷ୍ଣା ଆଦି ରୋଗରୁ ଉପଶମ ମିଳେ । ମନେରଖନ୍ତୁ ଏହାର ପରିମାଣ ବୟସ ଅନୁପାତରେ ଦୁଇ ଅଣାରୁ ଆଠଅଣା ଓଜନରେ ସୀମିତ ।

ଦେହରେ ଚର୍ମ ଉକୁଣି ଗୋଟାଏ ପରିତାପର ବିଷୟ । ଚର୍ମ ଉକୁଣି ଦୁଇ ପ୍ରକାର । ଧଳା ଓ କଳା । ଟଭାଲେମ୍ବୁ ରସ ସହିତ ଭଲ କର୍ପୂର ମିଶାଇ ଚମ ଉକୁଣି ହୋଇଥିବା ସ୍ଥାନରେ ଭଲକରି ମାଲିସ କରନ୍ତୁ । ଉକୁଣି ସବୁ ମରିଯିବେ । ଏହା ବ୍ୟତୀତ ହାତ, ପାଦର ଜ୍ୱଳନ ଭାବ (ପୋଡ଼ାଜ୍ୱଳା) ମଧ୍ୟ ଦୂର ହୋଇଥାଏ ।

ଶରୀରରେ ବାତ, କଫ, ପିତ୍ତ ଦୋଷରୁ ରୋଗ ହୁଏ । ଟଭା ଲେମ୍ବୁର ରସ ସହିତ କଞ୍ଚା ମିଶ୍ରି ମିଶାଇ ଦୈନିକ ୨ ଅଣା ଲେଖାଏଁ ଦୁଇଥର କିଛୁଦିନ ସେବନ କଲେ ରକ୍ତପିତ୍ତ ରୋଗ ନିବାରିତ ହୁଏ ।

ଛୋଟ ପିଲାଙ୍କ କୃମି ପାଇଁ ଏହା ଏକ ଉପାଦେୟ ଔଷଧ ଅଟେ । ଟଭାଲେମ୍ବୁ ରସରେ ମିଶ୍ରିଗୁଣ୍ଡ ମିଶାଇ ପ୍ରତ୍ୟେକ ସକାଳୁ ପିଲାଙ୍କୁ ୨ ଚାମଚ ଲେଖାଏଁ ଖାଇବାକୁ ଦେଲେ କୃମି ନାଶ ହୁଅନ୍ତି । ୩।୪ ଥର ଦେଇ ଅପେକ୍ଷା କରନ୍ତୁ । ଯଦି ଆବଶ୍ୟକ ପଡ଼ିବ ତାହେଲେ ଏହାର ମାତ୍ରା ବଢ଼ାଇ ପାରନ୍ତି ।

ଚମଦଳା, ମଚଳା, କଣ୍ଡୁ ପ୍ରଭୃତି ଚର୍ମରୋଗ ପାଇଁ ଭଲ ରକ୍ତା ନଡ଼ିଆ ତେଲ ସହିତ ଟଭାଲେମ୍ବୁ ରସ ମିଶାଇ ମାଲିସ କଲେ ଯାବତୀୟ ଚର୍ମରୋଗ ଭଲ ହୁଏ । ଦେହର ଶୁଖିଲା କୁଣ୍ଡିଆ, ରସା କୁଣ୍ଡିଆ ମଧ୍ୟ ଭଲ ହୁଏ ।

ଗଛର ମୂଳ ଓ ପତ୍ର ଏକାଠି ଉତ୍ତମ ରୂପେ ବାଟି ଦିଅନ୍ତୁ । ଗାଈ ଘିଅ ମିଶାଇ କିଛି ଦିନ ଖାଇଲେ ପୁରାତନ କଟିଶୂଳ, ତଳପେଟ ଦରଜ ଆଦି ବାୟୁ ବିକାର ଭଲ ହୁଏ ।

ସାଧାରଣତଃ ଭୁଣ୍ଡୁଘା ପ୍ରାୟ ପେଟ ଗରମରୁ ହୁଏ ବୋଲି କୁହାଯାଏ । ଏଥିପାଇଁ ବିନା ଖର୍ଚ୍ଚରେ ଟଭାଲେମ୍ବୁ (ବାଡ଼ିରେ ଥିଲେ) ଗୋଟିଏ ସହିତ ମରିଚ ଦୁଇ ଗୋଟି ବାଟି ଜିଭରେ ଲଗାଇ ଦିଅନ୍ତୁ । ଭୁଣ୍ଡୁଘା କଷ୍ଟରୁ ମୁକ୍ତି ପାଇବେ ।

ବଯୂସ ଛଉ ପ୍ରାୟ ଅଧିକାଂଶ ଲୋକଙ୍କ ପାଖରେ ଦେଖାଯାଏ । ଏଥିପାଇଁ ସାଧାରଣ ଭାବରେ କିଛି ପାନ ରସ ସହିତ ଟଭାଲେମ୍ବୁ ରସ ମିଶାଇ ଛଉ ସ୍ଥାନରେ ମାଲିସ କଲେ ଛଉ ଦୂର ହୁଏ ।

## ଅନ୍ୟାନ୍ୟ ବିଶେଷତ୍ୱ :

(କ) ଆପଣଙ୍କର ଦାନ୍ତ ପୋକ କାଟୁଛି । ଯନ୍ତ୍ରଣା ହେଉଛି । ଡାକ୍ତରଖାନା ବହୁତ ଦୂରରେ । ତେବେ ଉପାୟ କ'ଣ ? ହଁ ଅଛି । ସନିବାର ଦିନ ସକାଳୁ ଟଭାଲେମ୍ବୁ ଗଛର ମୂଳ ପୂର୍ବ ଭାଗରୁ ଆଣି କାନରେ ବାନ୍ଧି ଦିଅନ୍ତୁ । ପୋକ କଟା ଭଲ ହେବ ।

(ଖ) ଗୃହପାଳିତ ପଶୁ ଗୋରୁ ଗାଈ ଆମର ଅଶେଷ କାର୍ଯ୍ୟ କରି ଥାଆନ୍ତି । ସେମାନଙ୍କର ଯତ୍ନ ନେବା ଆମର କର୍ତ୍ତବ୍ୟ । ତେଣୁ ଶନିବାର ଦିନ ଅଧିଆ ମୁହଁରେ ଟଭା ଲେମ୍ବୁ ଗଛରୁ କାଠ ଆଣି ଖୁଣ୍ଟ ତିଆରି କରନ୍ତୁ । ନୂଆ ପଘା କରି ଗାଈକୁ ସେହି ଖୁଣ୍ଟରେ ବାନ୍ଧନ୍ତୁ । କେହି କିଛି ଅନିଷ୍ଟ କରିପାରିବେ ନାହିଁ ।

**ବ୍ୟବସାୟିକ ଦୃଷ୍ଟିକୋଣ**—ସାଧାରଣତଃ ଆମର କିଛି କାମ ନ ଥିବା ବେଳେ ଟଭାଲେମ୍ବୁ ଗଛଟିଏ ବାଡ଼ିରେ ପୋତିଲେ କ'ଣ କ୍ଷତିହେବ ? ବୋଧହୁଏ ନା । କାହିଁକନା ଏତେଗୁଡ଼ିଏ ଗୁଣ ଜାଣିଲା ପରେ ଆମେ ଯଦି ଟଭାଲେମ୍ବୁ ଗଛ ବାଡ଼ିରେ ଦି, ଗୁଟେଟି ଲଗାଇ ନପାରିବା ତା'ହେଲେ ଆମକୁ ବଳ ବୋକା ପ୍ରାୟ ନ ଥିବେ । ଏହି ଟଭାଲେମ୍ବୁ ମଧ ବଜାରରେ ବିକି କରି କିଛି ପଇସା ରୋଜଗାର କରି-ହେବ । ତେବେ ଆସନ୍ତୁ ନା ଆମେ ସମସ୍ତେ ନିଜ ବାଡ଼ିରେ ଟଭାଲେମ୍ବୁ ଗଛ ଲଗାଇବାର ସଂକଳ୍ପ ନେବା ।

**୨୨-ଚମ୍ପକ**—ଚମ୍ପାଫୁଲକୁ କିଏ ନ ଜାଣେ ? ଏହା ସାଧାରଣତଃ ଦୁଇ ଜାତିର । କିନ୍ତୁ ଦୁଇ ଜାତିର ଚମ୍ପାର ବହୁଳ ବ୍ୟବହାର ଦେଖା ଯାଏ । ଅର୍ଥାତ୍ ଗୋଟିଏ ଧଳା ଚମ୍ପା ଓ ଅନ୍ୟଟି ସ୍ୱର୍ଣ୍ଣ ଚମ୍ପା । ଏହାର ଗଛ ଗୁଡ଼ିକ ବଡ଼ ହୋଇଥାଏ । ପ୍ରାୟ ସମସ୍ତେ ଚମ୍ପା ଗଛକୁ ଜାଣନ୍ତି । ଫୁଲ ଭିତରେ ଯାହା ଶିବଙ୍କ ଅତି ପ୍ରିୟ ଫୁଲ ଅଟେ । ଆସନ୍ତୁ ବିଚାର କରି ଦେଖିବା ଠାକୁରଙ୍କ କାମ ବ୍ୟତୀତ ଏହାର ଆଉ ଔଷଧୀୟ ଗୁଣ କଣ ଅଛି ?

## ଔଷଧୀୟ ଗୁଣ ଓ ପ୍ରୟୋଗ ବିଧି—

ଚମ୍ପା ଗଛ ଯାଦୁ, କାଛୁ, କୁଣ୍ଡିଆ, ଢିମିରି, ବ୍ରଣ, ବାତ, ଆବୁ ଓ କ୍ଷତ ଆଦି ରୋଗପାଇଁ ବିଶେଷ ଦରକାରୀ ଅଟେ । ହଳଦୀ ସହିତ ଏହି ଗଛର ପତ୍ର ରସକୁ ମିଶାଇ ଉପରୋକ୍ତ ରୋଗପାଇଁ ବ୍ୟବହାର କଲେ ଉପଶମ ମିଳେ ।

ପ୍ରାୟ ଅଧିକାଂଶ ଲୋକଙ୍କର ଗୋଡ଼ ଫାଟ ରୋଗ ଥାଏ । ଚାଲିବା କଷ୍ଟକର ହୋଇପଡ଼େ । ଏଥିପାଇଁ ଚମ୍ପାଗଛର ଫଳକୁ ବାଟି ଗୋଡ

ଫାଟିଥିବା ଜାଗାରେ ଲେପ ଦେଲେ ଫାଟ ଭଲହୋଇ ଚମଡ଼ା ଚିକ୍କଣ ହୁଏ ।

ଏହା ମେହ, ପ୍ରମେହ ରୋଗପାଇଁ ଉପକାରୀ ଔଷଧ ଅଟେ । ଫୁଲକୁ ଜଳରେ ସିଝାଇ କ୍ୱାଥତିଆରି କରନ୍ତୁ । ଅଳ୍ପ ମିଶ୍ରି ମିଶାଇ ସେବନ କରନ୍ତୁ ଯାବତ୍‌ଯାଏ ମେହ ରୋଗ ଭଲହୁଏ ।

ବ୍ରଣ ଓ ବାଗୀ ପାଇଁ ଗଛର ମୂଳଛେଲିକୁ ଘୋଳଦହି ସାଙ୍ଗରେ ବାଟି ବ୍ରଣ ବା ବଥରେ ପ୍ରଲେପ ଦେଲେ ଫାଟିଯାଇ ଶୁଖିଯାଏ ।

ଏହା ଉନ୍ମାଦ ରୋଗ, ବାତପାଇଁ ବିଶେଷ ଫଳ ଦାୟକ । କେତୋଟି ଚମ୍ପକା ପତ୍ର ସଂଗ୍ରହକରି, ସେଥିରେ ଗାଈଘିଅ ଲଗାଇ ମୁଣ୍ଡ ଉପରେ ଥୋଇ ଦିଅନ୍ତୁ । ତା'ପରେ ପଦ୍ମମିଶା ପଗଡ଼ି ଭିଡ଼ି ଦିଅନ୍ତୁ । ଫଳରେ ମୁଣ୍ଡ ଥଣ୍ଡା ହୋଇ ଉନ୍ମାଦରୋଗ ତଥା ବାତରୋଗରୁ ଉପଶମ ମିଳିଥାଏ ।

କୃମିପାଇଁ ମଧ୍ୟ ଏହା ଘରୋଇ ଔଷଧ ଭାବରେ ବ୍ୟବହାର୍ଯ୍ୟ । ସମପରିମାଣରେ ପତ୍ର ରସ ଓ ଅଦାରସ ମିଶାଇ ଏକ ଗ୍ରାମଚ ବଡ଼ ଓ ଅଧାଗ୍ରାମଚ ସାନ ପିଲା ମାନଙ୍କୁ ଦେଲେ କୃମି ନାଶ ହୁଏ ।

ଆଜକାଲ ମୁଣ୍ଡରେ ଉକୁଣି ପ୍ରାୟ ଦେଖିବାକୁମିଳେ । ସେଥିପାଇଁ ଚମ୍ପାଗଛର ଛେଲିକୁ ଶୁଖାଇ ଚୂନାକରି ରଖନ୍ତୁ । ଏଥିରେ ନଡ଼ିଆ-ତେଲ କମ୍ବା ରାଶିତେଲ ମିଶାଇ ବାଳମୂଳରେ ମାଳିସ କରନ୍ତୁ । ଏମିତି ୭ଦିନ ପର୍ଯ୍ୟନ୍ତ କରିବେ । ତେଲ ଲଗାଇ କିଛି ସମୟ ପରେ ଗାଧୋ-ଇବେ । ମୁଣ୍ଡରୁ ଉକୁଣି ମରିଯାଆନ୍ତି ।

ଏହି ଗଛର ଫୁଲ ମୁଣ୍ଡବିନ୍ଧା, ଆଣ୍ଠୁ ଗଣ୍ଠି ଦରଜ ଓ କଟିମୂଳ ପାଇଁ ବିଶେଷ ଉପଯୋଗୀ ହୋଇଥାଏ । ଚମ୍ପାଫୁଲକୁ ତେଲରେ ଗୁଣି ଦିଅନ୍ତୁ । ଅବଶିଷ୍ଟ ତେଲକୁ ମୁଣ୍ଡବିନ୍ଧା ତଥା ଆଣ୍ଠୁ ଗଣ୍ଠି ଦରଜ ଓ

ଅସ୍ଥା ଦରଜରେ ମାଲସ କଲେ ରୋଗରୁ କ୍ଷାନ୍ତ ମିଳେ ।

ଗରମ ଦିନେ ପିଲାଙ୍କ ଦେହରେ ଫୋଟକାସବୁ ବାହାରେ । ଚମ୍ପା ପତ୍ର, କୁକୁରଛେଳିଆ ପତ୍ର, ହଳଦୀ ଏ ତିନି ଦ୍ରବ୍ୟକୁ ଏକାଠି ବାଟି ପିଲାଙ୍କ ଦେହରେ ଲଗାଇଲେ ଫୋଟକ ସବୁ ଦୂରହୁଏ ।

**ବିଶେଷତ୍ୱ**—ପୁଷ୍ୟାନକ୍ଷତ୍ରରେ ଚମ୍ପାଗଛର ଚେର ଆଣି ଘରର ମେରୁରେ ବାନ୍ଧିଲେ ସେ ଘରର ସୌଭାଗ୍ୟ ବୃଦ୍ଧି ହୁଏ ।

**୨୩-କାଠଚମ୍ପା**—କାଠଚମ୍ପାକୁ ପ୍ରାୟ ସମସ୍ତେ ଜାଣନ୍ତି । ଏହା ଦୁଇ ପ୍ରକାର । ଧଳା ଓ ସାମାନ୍ୟ ଲାଲ । ଏହି ଗଛର ଡ଼ାଳକୁ ପୋତି ଦେଲେ ବଞ୍ଚିଥାଏ ।

## ରୋଗର ବ୍ୟବହାର ବିଧି—

ବାଗୀ ପଡ଼ିଥିବା ବା ବ୍ରଣ ହୋଇଥିବା ସ୍ଥାନରେ ଏହି ଗଛର କ୍ଷୀର ସାଦାକାଗଜରେ ମାଖି ଲଗାଇଲେ ବାଥ,ବ୍ରଣଆଦି ବସିଯାଇଥାଏ ।

ଚର୍ମରୋଗପାଇଁ ଏହାର କ୍ଷୀରରେ ଖଣ୍ଡେ ସାଦାକନା ବୁଡ଼ାଇ ଶୁଖାଇ ଦିଅନ୍ତୁ । ତା'ପରେ ତାକୁ ନିଆଁରେ ପୋଡ଼ି ପାଉଁଶ କରନ୍ତୁ । ସେ ପାଉଁଶକୁ ସୋରିଷ ତେଲରେ ମିଶାଇ ନିଆଁରେ ଫୁଟାଇ ଦିଅନ୍ତୁ । ଅଣ୍ଡାକଣ ଚର୍ମରୋଗ ହୋଇଥିବା ସ୍ଥାନରେ ସେହି ତେଲକୁ ଲଗାନ୍ତୁ ନିଶ୍ଚୟ ଉପକାର ପାଇବେ ।

ଚମ୍ପାଗଛର ଛେଲିକୁ ବାଟି ବ୍ରଣ ହୋଇଥିବା ସ୍ଥାନରେ ଲଗାଇଲେ ବ୍ରଣ ଫାଟିଯାଏ ।

ଏହାର କ୍ଷୀରକୁ ଅଳ୍ପ ଲୁଣମିଶାଇ ଘାଦୁରେ ଲଗାଇଲେ ଘାଦୁ ଭଲହୁଏ ।

କୌଣସି ଘା' ଯଦି ଶୁଖୁ ନଥାଏ ତେବେ ଏହାର କ୍ଷୀର ସଂଗ୍ରହ କରି ସେଥିରେ ଝୁଣାକୁ ଚୁର ମିଶାନ୍ତୁ । ମଲମପରି ହୋଇଗଲେ କ୍ଷତ ସ୍ଥାନରେ ଲଗାଇଲେ ଘା' ଶୁଖିଯାଏ ।

**ବିଶେଷ ଦ୍ରଷ୍ଟବ୍ୟ**—ଶନିବାର କିମ୍ବା ରବିବାର ଯଦି ସ୍ତ୍ରୀର ଶୁଦ୍ଧସ୍ନାନ ହୁଏ ତେବେ ସେହିଦିନ ସ୍ନାନ କାଳରେ ଏ ଗଛର ଚେର ଖଣ୍ଡିଏ ଆଣି କଟିରେ ଧାରଣ କଲେ ବନ୍ଧ୍ୟାତ୍ୱ ଦୂର ହୁଏ । ସ୍ତ୍ରୀ ଗର୍ଭ-ବତୀ ହେବାର ସୌଭାଗ୍ୟ ଅର୍ଜନ କରେ । ଏହା ତନ୍ତ୍ରଶାସ୍ତ୍ରର ମତଅଟେ ।

**୨୪-ମୁଚୁକୁନ୍ଦ**—ଏହିଗଛ ଖୁବ୍ ବଡ ବଡ଼ । ଫୁଲ ଲମ୍ବା ପତ୍ର ବଡ଼ ବଡ । ଫୁଲ ସୁଗନ୍ଧଯୁକ୍ତ । ପ୍ରାୟ ଆମ ଦେଶରେ ଅନେକ ସ୍ଥାନରେ ଦେଖାଯାଏ । ଏହା କଫ, କାଶ, ବ୍ରଣ, ଶୁଷ୍କ କଣ୍ଡୁ, କଣ୍ଠ-ଦୋଷ, ଜ୍ୱର, ଶୋଥ, ଯାବତୀୟ ଚର୍ମରୋଗ ଇତ୍ୟାଦିରେ ଲାଗିଥାଏ । ଏହାର ଫୁଲ ମୁଣ୍ଡବିନ୍ଧା, ରକ୍ତ ଦୋଷ, ବିଷ ଦୋଷ, ପିତ୍ତ, ପୀଡା, ବାୟୁ ବିକୃତି ଇତ୍ୟାଦିରେ ବ୍ୟବହୃତ ହୋଇଥାଏ ।

**ବ୍ୟବହାର ବିଧି—**

ସାଧାରଣ ମୁଣ୍ଡବିନ୍ଧା, ଅଧାକପାଳି ମୁଣ୍ଡବିନ୍ଧା ପାଇଁ ମୁଚୁକୁନ୍ଦ ଫୁଲ ସାଙ୍ଗରେ ଡାଳଚିନି ମିଶାଇ ବାଟି ମୁଣ୍ଡର ଦୁଇ ପାର୍ଶ୍ୱରେ ଲେପ ଦିଅନ୍ତୁ । ମୁଣ୍ଡ ବିନ୍ଧାରୁ ତ୍ରାଣ ପାଇବେ ।

ଏହିଗଛର ଛେଲିକୁ ଜଳରେ ଭଲକରି ସିଝାଇ ସେହି ପାଣିରେ କାଛୁ, କୁଣ୍ଡିଆ, ଶୁଖିଲା କୁଣ୍ଡିଆ, ପଚିଲା ପ୍ରଭୃତିରେ ଲଗାଇଲେ କିମ୍ବା ଗାଧୋଇଲେ ଭଲହୁଏ ।

ମୁଚୁକୁନ୍ଦ ଫୁଲକୁ ଜଳରେ ସିଝାଇ ଛାଣି ଦିଅନ୍ତୁ । ମହୁ ଓ ମିଶ୍ରି ଗୁଣ୍ଡା କରି ମିଶାଇ ଦିଅନ୍ତୁ, କିମ୍ବା ଶୁଣ୍ଠିଚୂନା ମିଶାନ୍ତୁ । ତା'ପରେ

୨ ଗ୍ରାମ ଲେଖାଏଁ ୨ଥର ଖାଆନ୍ତୁ । ଯାବତୀୟ ଉଦରପୀଡ଼ା, ରକ୍ତ-ପେଟ ପଡ଼ିବା, ବାୟୁ ବିକୃତି, କଟିଶୂଳ ଆଦି ରୋଗରୁ ମୁକ୍ତ ପାଇବେ ।

ବଟା ହଳଦୀ ସାଙ୍ଗରେ ଏହାର ପତ୍ର ରସକୁ ମିଶାଇ ଛାଲୁ କୁଣ୍ଡିଆ ଜାଗାରେ ଲଗାଇଲେ ଶୀଘ୍ର ଭଲହୁଏ ।

ବହୁଦିନର ପୁରୁଣା କାଶପାଇଁ ଏହାର ପତ୍ର ରସ ସହିତ ମହୁ ମିଶାଇ ଖାଇଲେ କାଶ ଭଲ ହୁଏ ।

ଅଜୀର୍ଣ୍ଣ ଦୋଷ, ବାୟୁ ବିକୃତି, ପେଟଫମ୍ପା, ଶୂଳ, ଇତ୍ୟାଦି ରୋଗରେ ଏହା ବିଶେଷ ଉପଯୋଗୀ । ମୁଚୁକୁନ୍ଦ ଗଛର ଛେଲିକୁ ସିଝାଇ କ୍ୱାଥ ତିଆରି କରନ୍ତୁ । ସେଥିରେ ଖାଇହେଲା ଭଳି ଶୁଣ୍ଠି ଚୂନା ମିଶାଇ ଦୈନିକ ୨ଗ୍ରାମ ଲେଖାଏଁ ସେବନ କରି ଅଧଗ୍ଲାସ ପାଣିପିଅନ୍ତୁ ୭।୮ଦିନ ଏପରି କଲେ ସବୁ ପ୍ରକାର ଅଜୀର୍ଣ୍ଣ ଦୋଷ କଟିଯାଏ ।

ତେଣୁ ମୁଚୁକୁନ୍ଦ ଗଛଥିବା ସ୍ଥାନ ମାନଙ୍କରେ ଏହାର ଯତ୍ନନେବା ସହ ଆହୁରି ଅଧିକ ବଂଶବୃଦ୍ଧି ନିମିତ୍ତ ଯତ୍ନବାନ ହେବା ଉଚିତ୍ ।

**ବିଶେଷ ଦ୍ରଷ୍ଟବ୍ୟ**—ମାଘ ମାସର ଚତୁର୍ଦ୍ଦଶୀଯୁକ୍ତ ଅମାବାସ୍ୟା ଦିନ ଏହାର ଚେରଆଣି ଘରେ ରଖିଲେ ଘରର ସମସ୍ତ ପରିବାର ସୁଖୀ ରୁହନ୍ତି ଓ ବାହାର ଶତ୍ରୁ କିଛି ଅନିଷ୍ଟ କରିପାରନ୍ତି ନାହିଁ ।

**୨୪-ପଲାଶ**—ଏହା ବଡ ବଡ଼ ଗଛ ହୁଏ । ହାତୀକାନଭଳି ପତ୍ରଯୁକ୍ତ । ଫୁଲସବୁ ପାଟରଙ୍ଗର ନାଲ୍ ବିରଣ । ବସନ୍ତ ଋତୁରେ ଏହି ଗଛରେ ଫୁଲ ଫୁଟେ । ଏହା ଅତ୍ୟନ୍ତ ଉପକାରୀ ପ୍ରସିଦ୍ଧ ବୃକ୍ଷ ଅଟେ । ଗଡ଼ଜାତ ଅଞ୍ଚଳରେ ବେଶୀ ଦେଖାଯାଏ । ଏହି ଗଛକୁ କେଇ କବି ଓ ଲେଖକମାନେ ବିଭିନ୍ନ କ୍ଷେତ୍ରରେ ଉପମା ଦେଇ ବର୍ଣ୍ଣନା କରିଥାନ୍ତି ।

**ଉପକାରୀ ଗୁଣ**—ଏହାର ରସ କଟୂତିକ୍ତ ଲାଗେ । ଏହା ଉଷ୍ଣ ବୀର୍ଯ୍ୟ, ଅଗ୍ନିମାନ୍ଦ୍ୟ, ବୀର୍ଯ୍ୟବର୍ଦ୍ଧକ, ବ୍ରଣ, ଭଗନ୍ଦର, ଅର୍ଶ, କ୍ରିମି, ଗୁଳ୍ମ, ଗ୍ରହଣୀ, ଯକୃତ ବିକାର 'ପ୍ଲୀହା ବୃଦ୍ଧି' ଇତ୍ୟାଦି ରୋଗରେ ଦରକାର ହୁଏ । ଏହାର ମାତ୍ରା ଦୁଇଅଣାରୁ ଆଠଅଣାପର୍ଯ୍ୟନ୍ତ ବୟସ ଅନୁପାତରେ ଦିଆଯାଏ ।

ପ୍ରାକୃତିକ ଔଷଧୀୟ ଗୁଣକୁ ନେଇ ପଳାଶ ଗଛ ପ୍ରସିଦ୍ଧ । ହାଡ ଭାଙ୍ଗି ଯାଇଥିଲେ ଏହି ଗଛର ମୂଳ ଛେଲିକୁ ତାହାର ପତ୍ର ରସଦ୍ୱାରା ଉତ୍ତମରୂପେ ବାଟି ଭଙ୍ଗା ସ୍ଥାନରେ ଭଲକରି ଲେପ ଦିଅନ୍ତୁ । ପରେସ୍ଥାର କପଡ଼ାଖଣ୍ଡିଏ ଭଲକରି ଗୁଡ଼ାଇ ବାନ୍ଧିଦିଅନ୍ତୁ । ଫଳରେ ଭାଙ୍ଗି ଯାଇଥିବା ସ୍ଥାନ ଯୋଡ଼ି ହୋଇଯାଏ ।

ଏହାର ପତ୍ରକୁ ବାଟି ବ୍ରଣ, ଅର୍ଶ, କ୍ଷତ, ଗୁହ୍ୟଦ୍ୱାରକ୍ଷତ, ଭଗନ୍ଦର ଆଦିରେ ଚନ୍ଦନଭଳି ଲେପଦେଲେ ଉକ୍ତରୋଗରୁ ମୁକ୍ତିମିଳେ ।

ପିଲାଙ୍କ କ୍ରିମିଦୋଷପାଇଁ ଏହା ବିଶେଷ ଉପଯୋଗୀ । ପ୍ରଥମେ ଏହିଗଛର ଛେଲିକୁ ଶୁଖାଇ ପୋଡି ପାଉଁଶ କରନ୍ତୁ । ତା'ପରେ ମାଟି-ପାତ୍ର ବା କାଚ ପାତ୍ରରେ କିଛି ଜଳ ରଖି ଉକ୍ତ ପାଉଁଶକୁ ଭିଜାଇ ଦିଅନ୍ତୁ । ଘଣ୍ଟାଏ ଛାଡ଼ି ଦିଅନ୍ତୁ । ପାଉଁଶ ତଳେ ବସିଯିବ ଓ ଜଳ ଉପରେ ରହିଯିବ । ଏହି ଜଳକୁ ମହୁମିଶାଇ ୩ବର୍ଷରୁ କମ୍ ପିଲାଙ୍କୁ ୨ଅଣା ଓ ତଦୂର୍ଦ୍ଧ ପିଲାଙ୍କ ପାଇଁ ୨ଅଣା ଦିନକୁ ୨ଥର ସେବନ କରାନ୍ତୁ । ଯାବତୀୟ କ୍ରିମି ବିନଷ୍ଟହୋଇ କ୍ରିମିଗତ ସବୁଦୋଷ ନିବାରିତ ହେବ । ଏହା ଅବଶ୍ୟ ସମୟ ସାପେକ୍ଷ ମାତ୍ର ବ୍ୟୟ ସାପେକ୍ଷ ନୁହେଁ ।

ଏହାର କ୍ଷୀରକୁ ଅଧାରତି ପରିମାଣରେ ନେଇ ମହୁରେ ମିଶାଇ ଖାଇ ଦିଅନ୍ତୁ । ଦିନକୁ ୨ଥର ଅଧଘଣ୍ଟାଏ ଲେଖାଏଁ ଖାଇଲେ ଅର୍ଶ, ଗୁଳ୍ମ, ପ୍ଲୀହା, ବ୍ରଣ, କ୍ଷତ ଓ ପେଟର ଯାବତୀୟ ବେଦନା ଦୂରହୁଏ ।

ଆଜକାଲ ଅକାଳ ବାର୍ଦ୍ଧକ୍ୟ ପ୍ରାୟତଃ ଯୁବକ ଅବସ୍ଥାରେ ଦେଖା ଦେଇଥାଏ । ଏହାର କାରଣ କୃତ୍ରିମ ଶୁକ୍ରକ୍ଷୟ । ତେଣୁ ବୈବାହିକ ଜୀବନରୁ କୌଣସି ସୁଖ ମିଳେନାହିଁ । ଏଣୁ ଏହାର ରସ ସଙ୍ଗରେ ମହୁ ମିଶାଇ ଦୈନିକ ଏକଚାମଚ ସକାଳୁ ପାନକଲେ ଶୁକ୍ରବୃଦ୍ଧି ହୁଏ । ଏହା ବ୍ୟତୀତ ଆଗରୁ ଶୁକ୍ରକ୍ଷୟଜନିତ ଦୁର୍ବଳତା ହ୍ରାସପାଏ । ସ୍ତ୍ରୀ ସଙ୍ଗମରେ ବୃଷଭ ଭଳି କାର୍ଯ୍ୟ ଦକ୍ଷତା ଆସେ । ଅତିସାର ଓ ଗ୍ରହଣୀ ଝାଡ଼ା ପାଇଁ ଏହା ଅତ୍ୟନ୍ତ ଉପଯୋଗୀ । ଏହାର ଛେଲିକୁ ଛେଚି ରସ ବାହାରକରି ସେଥିରେ ମହୁମିଶାଇ ପ୍ରତି ଝାଡାପରେ ଏକ ଚାମଚ ଲେଖାଏଁ ୩।୪ଦିନ ଖାଇଲେ ଅତିସାର ଓ ଗ୍ରହଣୀ ଝାଡ଼ା ଭଲହୁଏ ।

କୃତ୍ରିମ ଉପାୟରେ ଶୁକ୍ରକ୍ଷୟ ଗୋଟିଏ ସାଂଘାତିକ ଚଳଣି ହୋଇ-ଗଲାଣି । ଶୁକ୍ରର ଉପାଦେୟତା ସମ୍ବନ୍ଧରେ ପ୍ରାୟ ଜ୍ଞାନ ନାହିଁ । ତେଣୁ ଯୌବନାଙ୍ଗ ସମ୍ପୂର୍ଣ୍ଣ ଦୋଷଯୁକ୍ତ ହୁଏ । ଶରୀରର ପୁଷ୍ଟି ନଷ୍ଟହୁଏ । ଏଥିପାଇଁ ସହଜ ଉପାୟ ହେଉଛି—ଟଳଣ ଗଛର ଅଠା । ଅଠାକୁ କିଛି ସମୟ ପାଣିରେ ଭିଜାଇ ଦିଅନ୍ତୁ । ଫଉଳାଗଲେ ଭଲକରି ଚକଟି ଦିଅନ୍ତୁ । ଦୈନିକ ୨ଅଣା ପରିମାଣରେ କିଛୁଦିନ ଖାଆନ୍ତୁ । ଶୁକ୍ରବୃଦ୍ଧି ହେବା ସହିତ ଶରୀର ହୃଷ୍ଟ ପୁଷ୍ଟ ହେବ । ଶୁକ୍ର ସ୍ତମ୍ଭନ ହୋଇ ରତି-କ୍ରୀଡ଼ାରେ ଦ୍ୱିଗୁଣିତ ବଳ ଆସିବ । ଏହାର ଛେଲିକୁ ଜଳରେ ସିଝାଇ ଅଳ୍ପ ଉଷ୍ମଥାଇ ଶୋଇବା ବେଳେ କୁଳ କୁଳ କଲେ ମୁଖଗତ ଯାବତୀୟ ରୋଗ ଭଲହୁଏ ।

**ବିଶେଷ ଦ୍ରଷ୍ଟବ୍ୟ**—ବର୍ତ୍ତମାନ ଅଧିକାଂଶ ସ୍ତ୍ରୀ ଲୋକ ପୂର୍ବଜନ୍ମ ଅଦୃଷ୍ଟ କର୍ମଫଳ ହେତୁ ବନ୍ଧ୍ୟାତ୍ୱ ରୋଗରେ ପୀଡ଼ିତ । କେତେକଙ୍କର ସନ୍ତାନହୋଇ ଅଧାରୁ ନଷ୍ଟହୋଇ ଯା'ନ୍ତି । ବେଳେ ବେଳେ ଏଥିପାଇଁ ଆଧୁନିକ ଚିକିତ୍ସାଶାସ୍ତ୍ର ମଧ୍ୟ ବିଫଳ ହୋଇଥାଏ । ଏଥିପାଇଁ ଈଶ୍ୱରଙ୍କ ଆଶିଷ ଓ ପ୍ରାକୃତିକ ଉପାୟ ଅବଲମ୍ବନ ଏକାନ୍ତ ଆବଶ୍ୟକ ।

**ବିଧି**—ଶନିବାର ଦିନ ସକାଳୁ ମୁଣ୍ଡଧୋଇ ଗାଧୋଇ କଞ୍ଚା ଦୁଧ ନେଇ ପଲାଶଗଛ ମୂଳରେ ଦେଇ ପୂଜାକରି ପୂର୍ବପାଖରୁ ଖଣ୍ଡିଏ ଚେର ସଂଗ୍ରହ କରନ୍ତୁ । ବନ୍ଧ୍ୟାଦୋଷଯୁକ୍ତ ସ୍ତ୍ରୀର ବାମବାହୁରେ ଧାରଣକରାନ୍ତୁ । ସ୍ତ୍ରୀର ବନ୍ଧ୍ୟାତ୍ୱ ତଥା ମୃତବତ୍ସା ଦୋଷ କଟିଯାଇ ସନ୍ତାନର ଜନ୍ମ ହୋଇପାରିବେ । ଏହା ତନ୍ତ୍ରଶାସ୍ତ୍ରରୁ ଉଦ୍ଧାର କରାଯାଇଛି ।

ରୋହିଣୀ ନକ୍ଷତ୍ରରେ ଏହି ଗଛର ଚେର ଆଣି ପୁରୁଷ ନିଜ ବାହୁରେ ଧାରଣକଲେ ସ୍ତ୍ରୀ ବଶୀଭୂତ ହୁଅନ୍ତି ।

ଏଣୁ ସରକାରୀ ସ୍ଥାନମାନଙ୍କରେ ପଲାଶଜଙ୍ଗଲ ସୃଷ୍ଟିକରି ପ୍ରାକୃତିକ ପରିବେଶକୁ ସୁନ୍ଦରରଖିବା ସଙ୍ଗେସଙ୍ଗେ ଆମର ନିତ୍ୟ ବ୍ୟବହାର୍ଯ୍ୟ ଦିନମାନଙ୍କରେ ଏଥିରୁ ଔଷଧୀୟ ଗୁଣକୁ କାର୍ଯ୍ୟରେ ଲଗାଇ ପାରିବା ।

**୨୭-ବେତ**—ଏହା ଏକ ଲତାଜାତୀୟ ବୃକ୍ଷ । ଏହାର ପତ୍ର ସରୁ ଓ କଣ୍ଟାଯୁକ୍ତ । ଏହାର ପାଚିଲା ଫଳ ପିଲାମାନେ ଆନନ୍ଦରେ ଖାଆନ୍ତି । ପାହାଡ଼ ପର୍ବତମାନଙ୍କରେ ଯେଉଁ ବେତ ଉଠିଥାଏ ତାହା ସାଧାରଣତଃ ବଡ଼ ଓ ଶକ୍ତ ହୋଇଥାଏ ।

**ଗୁଣ ବିଚାର**—ବେତ ଅଳ୍ପ ମଧୁର ମିଶ୍ରିତ କଟୁତିକ୍ତରସ ଅଟେ । ଶୀତଳ, ରୁଚିକର ଓ ଭ୍ରମ ପରିହାରକ ଅଟେ । ଏହା ବ୍ୟତୀତ ପିତ୍ତ-ଦୋଷ, ଭୂତାବେଶ, କୁଜ୍ଞାନ, ମୂର୍ଚ୍ଛାଭ୍ରମ, ଶିରବ୍ୟଥା, ଉନ୍ମାଦ, ଦନ୍ତ ରୋଗ ନିବାରକ ଅଟେ ।

**ବ୍ୟବହାର ନିୟମ**—ବେତକନ୍ଦାକୁ ଛେଚି ରସବାହାର କରି ମିଶ୍ରିସହିତ ସେବନ କଲେ ପିତ୍ତଜ୍ୱର, ମୁଣ୍ଡବ୍ୟଥା, ବାତଦୋଷ ଓ ଭ୍ରମ ଦୂର ହୁଏ ।

ବେତକନ୍ଦାକୁ ଘିଅରେ ଭଜା ଖାଇଲେ ନାନାଦ ପିତ୍ତଦୋଷ, ଜ୍ୱର, ଅଗ୍ନିମାନ୍ଦ୍ୟ, ତଥା ଅରୁଚି ପ୍ରଭୃତି ଦୂର ହୋଇଥାଏ ।

ବେତକୋଳ ଅତ୍ୟନ୍ତ ଉପକାରୀ ଅଟେ । ଏହା ମେହ, ପ୍ରମେହ, ଉପଦଂଶ, ବହୁମୂତ୍ର, ଭଗନ୍ଦର, ଅତିସାର, ବମନ ଓ ସ୍ୱପ୍ନଦୋଷ ଜନିତ ଧାତୁକ୍ଷୟ ରୋଗରୁ ମୁକ୍ତିଦିଏ ।

**ସେବନ ବିଧି**—କଞ୍ଚା ବା ପାଚିଲବେତ କୋଳକୁ ଛେଚି ଦିଅନ୍ତୁ । ସମପରିମାଣରେ ଅଁଳାରସ ମିଶାନ୍ତୁ । ତା'ପରେ କିଛି ମିଶ୍ରି ଗୁଣ୍ଡ ମିଶାଇ ଦିନକୁ ୩ଥର ଥରକୁ ୧ ଚାମଚ ଲେଖାଏଁ ୭ଦିନ ପର୍ଯ୍ୟନ୍ତ ସେବନ କରନ୍ତୁ । ଯାବତୀୟ ଉପରୋକ୍ତ ଲକ୍ଷଣଜନିତ ରୋଗ ଦୂରହେବ । ଏହା ନିଶ୍ଚିତ । (ପରୀକ୍ଷିତ)

ଆଜିକାଲି ଅନେକ ଲୋକଙ୍କର ବହୁଦିନର ଥଣ୍ଡା ଯୋଗୁ ନାକ ପୁଡ଼ା ଫୁଲିଯାଏ । ନାକଭିତରେ ମାଂସ ବଢ଼ି ଜ୍ୱର ହୁଏ । ନିଶ୍ୱାସ ପ୍ରଶ୍ୱାସରେ ବାଧାଦିଏ । ଏହାକୁ ଉହାଜ୍ୱର କୁହନ୍ତି । ଏଥିରୁ ନିସ୍ତାର ପାଇବାକୁ ହେଲେ ବେତପତ୍ର ରସ ସାଙ୍ଗରେ ଅଳ୍ପଲୁଣ ମିଶାଇ ନାକରେ ପକାଇଲେ ଉହାଜ୍ୱର ଭଲହୋଇଥାଏ ।

ଅପସ୍ମାର ବାତପାଇଁ ବେତକନ୍ଦା ଅତ୍ୟନ୍ତ ଉପକାରୀ ଅଟେ । ବେତକନ୍ଦା ରସ, ଅଦାରସ, କାଗିଜି ଲେମ୍ବୁ ରସ, ମହୁ ଓ ଗାଈଘିଅ ସମପରିମାଣରେ ମିଶାଇ ଏକ ଚାମଚ ଲେଖାଏଁ ଖାଇଲେ ଓ ମୁଣ୍ଡରେ ମାଲିସ କଲେ ଯାବତୀୟ ପିତ୍ତଦୋଷ, ଉନ୍ମାଦ ଜ୍ୱର, ଅପସ୍ମାର ରୋଗ ଭଲହୁଏ ।

**ବିଶେଷ ସୂଚନା**—ଦାନ୍ତ ପୋକକଥା ଏବେ ଗୋଟାଏ ସାଧାରଣ ରୋଗରେ ପରିଣତ ହେଲଣି । ତେଣୁ ଗାଁ ଗହଳରେ ବିନା ପଇସାରେ

ଏଥିରୁ ନିବୃତ୍ତି ନିମିତ୍ତ ଶନିବାର ଦିନ ଅଧୁଆ ମୁହଁରେ ବେତଚେର ଖଣ୍ଡିଏ ସଂଗ୍ରହ କରନ୍ତୁ । ଯେଉଁ ପାଖ ଦନ୍ତ ପୋକ କାଟୁଛି, ସେହିପାଖ କାନ ଉପରେ ବାନ୍ଧି ଦିଅନ୍ତୁ । ପୋକକଟା ବନ୍ଦ ହେବ ।

ଏହି ଗଛର ଚେର ଜ୍ୟେଷ୍ଠା ନକ୍ଷତ୍ରରେ ଯଥାବିଧି ପୂଜାକରି ଆଣି ସ୍ତ୍ରୀ ମାନଙ୍କର ଶୁଦ୍ଧ ସ୍ନାନଦିନ କୁମାରୀ ସୂତାଦ୍ୱାରା ବାମବାହୁରେ ଧାରଣ କଲେ ସେହି ମାସରେ ଗର୍ଭ ଉଦୟ ହୁଏ ।

**୨୭-ସାହାଡ଼ା**—ସାହାଡା ଗଛକୁ ପ୍ରାୟ ସମସ୍ତେ ଜାଣନ୍ତି । ଏହା ଆମ ଦେଶରେ ସବୁଠି ଦେଖାଯାଏ । ଏହାର ପାଚିଲାକୋଳକୁ ଚଢେଇ ତଥା ଶ୍ରେଷ୍ଠ ଶୁଆ ଝିଅମାନେ ମଧ୍ୟ ଶ୍ରଦ୍ଧାର ସହି ଖାଆନ୍ତି । ଏହି ଗଛର ଫଳକୁ ଛେଳିମାନେ ମଧ୍ୟ ଖାଆନ୍ତି । ଏହା ଅତ୍ୟନ୍ତ ଉପଯୋଗୀ ବୃକ୍ଷଟିଏ । ଉଆଁସୀ କନିଆଁ ଏହି ଗଛ ପୂଜାକରି ସ୍ୱାମୀରୂପେ ବରଣକଲେ ତା'ର ପ୍ରକୃତ ସ୍ୱାମୀ ଦୀର୍ଘାୟୁ ହୁଏ । (ପୁରାଣ ସମ୍ମତ) । ଏହାକୁ ବୈଦିକ ମତରେ ପୂଜାମଧ୍ୟ କରାଯାଏ । ଏହାର ଅନେକ ଔଷଧୀୟ ଗୁଣଅଛି ।

**ଏହାର ଗୁଣ ବିଶେଷ**--ଏହା ଉଷ୍ଣବୀଜ, ଇନ୍ଦ୍ରିୟର ସନ୍ଧିପ୍ରକୋପ, ବାୟୁ, କୃମି, ଦନ୍ତ, ମୁଖରୋଗ, ଅତିସାର, ଧ୍ୱଜଭଙ୍ଗ, ଲିଙ୍ଗର ଅଧିକ ଉତ୍ତେଜନା, ଶ୍ଳେଷ୍ମା, ବାତ, ଧବଳ କୁଷ୍ଠ, ବାତରକ୍ତ, ଇତ୍ୟାଦି ରୋଗର କାମରେ ଲାଗେ ।

**ମାତ୍ରା**—ଏକଅଣାରୁ ଅର୍ଦ୍ଧଭରି ପର୍ଯ୍ୟନ୍ତ ।

**ପ୍ରୟୋଗ ବିଧି**—ଦନ୍ତର ସୁରକ୍ଷା ନିମିତ୍ତ ସାହାଡ଼ାଗଛର ଦାନ୍ତକାଠି ଅବ୍ୟର୍ଥ ଅଟେ । ଦନ୍ତମୂଳ ମଜଭୂତ କରି ଦନ୍ତରୋଗ ଦୂରକରେ ଓ ଶ୍ରୀବର୍ଦ୍ଧନ କରେ ।

ଅତ୍ୟନ୍ତ ଥଣ୍ଡାରୁ ବା ପେଟ ଗରମରୁ ଦନ୍ତମୂଳ ପୀଡ଼ା ହେଲେ ସାହାଡ଼ା ଗଛର ଛେଲକୁ ଜଳରେ ସିଝାଇ କ୍ୱାଥ ତିଆରିକରି ବାରମ୍ବାର କୁଳିକଲେ ଦାନ୍ତର ପୀଡା କମିଯାଏ ।

ଅତ୍ୟନ୍ତ ସ୍ୱପ୍ନଦୋଷ ଫଳରେ ଧାତୁକ୍ଷୟ ହୋଇ ଶରୀର ଦୁର୍ବଳ ଓ ଶ୍ରୀହୀନ ହୋଇପଡେ । ଏଥିରୁ ନିବୃତ ହେବାକୁ ହେଲେ ସାହାଡ଼ା-ଚୋପାର ମଞ୍ଜିକୁ ଶୁଖାଇ ଚୂନାକରି ସଫା ଧଳାକନାରେ ଛାଣିଦିଅନ୍ତୁ । ସେଥିରୁ ଦୈନିକ ଏକଅଣା ମହୁ ସାଙ୍ଗରେ ମିଶାଇ ମାସେ ପର୍ଯ୍ୟନ୍ତ ଖାଇଲେ ଧାତୁକ୍ଷୟଜନିତ ସମସ୍ତ ଦୋଷ ନିବାରିତ ହୁଏ ।

ଅଧୁନା ଯୁବକମାନଙ୍କର ଅଧିକ ଧ୍ୱଜଭଙ୍ଗ ତଥା ଦାମ୍ପତ୍ୟଜୀବନର ଅବସନ୍ନତା ପରିଲକ୍ଷିତହୁଏ । ଏହାର କାରଣ ଅପୂର୍ଣ୍ଣ ଯୌବନାବସ୍ଥାରେ ହସ୍ତ ମୈଥୁନ କିମ୍ବା ଅବୈଧ ବୀର୍ଯ୍ୟକ୍ଷୟ । ତେଣୁ ସ୍ତ୍ରୀ ସଙ୍ଗମର ସମର୍ଥ ହରାଇବାକୁ ପଡେ । ଏଥିପାଇଁ ସାହାଡା ଗଛର ମଞ୍ଜିକୁ ଶୁଖାଇ ଚୂର୍ଣ୍ଣ କରନ୍ତୁ, ସେଥିରେ ଘିଅ ଓ ପାନରସ ମିଶାଇ ଏକଅଣା ଦିନକୁ ୨ଥର ୩ମାସ ପର୍ଯ୍ୟନ୍ତ ଖାଆନ୍ତୁ । ଇନ୍ଦ୍ରିୟର ପୂର୍ବଶକ୍ତି ଫେରିଆସିବା ସଙ୍ଗେ ସଙ୍ଗେ ଶରୀର ସୁନ୍ଦର ବପୁଯୁକ୍ତ ହେବ । ହଁ, ମନେରଖନ୍ତୁ ଔଷଧ ଖାଇ-ବାର ୧୦ ମିନିଟରୁ ୩୦ ମିନିଟ୍ ଭିତରେ ଗରମ ଦୁଧ ସହିତ ଚିନି ମିଶାଇ ଏକଗ୍ଲାସ ପାନକରିବା ବିଧେୟ ।

ଆଜକାଲି ଅନେକ ଲୋକଙ୍କ ଗୋଡ଼ ହାତରେ ଧଳାଛିଟ ଦେଖା ଯାଏ । ସେଥିରୁ ପ୍ରାକୃତିକ ଉପାୟରେ ନିବୃତ୍ତ ହେବାକୁ ହେଲେ— ସାହାଡାମଞ୍ଜି ଓ ଗୋରୁମୁତକୁ ବାଟି ଛିଟସ୍ଥାନରେ ଲଗାଇଲେ ଅଳ୍ପଦିନ ମଧ୍ୟରେ ଛିଟର ରଙ୍ଗ ବଦଳି ଶରୀରର ପୂର୍ବ ରଙ୍ଗ ଫେରିଆସେ ।

ସାହାଡା ଗଛର ଦାନ୍ତକାଠି ଦେହମାମ୍ସ ବୃଦ୍ଧି କରେ । ଏହା ବେଦ ପ୍ରମାଣ ।

**ବିଶେଷ ସୂଚନା**—ଔଷଧୀ ପରିବର୍ତ୍ତେ ଏହାର ଦୈବଶକ୍ତି ମଧ୍ୟ ଗୁଣଅଛି । ସାହାଡା ମଳଙ୍ଗ ପିନ୍ଧିବା ପାଇଁ ଅତ୍ୟାବଶ୍ୟକୀୟ ଅଟେ ।

ସାହାଡା ମଳଙ୍ଗ କମ୍ବା ଡାଳ ଶନିବାର, ରବିବାରଦିନ ଆଣି ଧାନ ଅମାରରେ ରଖିଲେ ଧାନରେ କୀଟ ଲାଗନ୍ତି ନାହିଁ ।

ଏଣୁ ଆସନ୍ତୁ ନା ଆମେ ସମସ୍ତେ ମିଶି ଆଗରୁଉଠିଥିବା ସାହାଡ଼ା ଗଛର ଯତ୍ନ ନେବା । ଯଦି ବାଡ଼ିବଗିଚ୍ଚାରେ ଗୋଟିଏ ଗୋଟିଏ ସାହାଡା ଗଛ ଲଗାଇ ପାରିବା ତେବେ ଲୋକମାନଙ୍କର ତଥା ନିଜର କେତେ ଉପକାର ଲାଗିବ କହିଲେ ସତେ ।

**୨୮-ଗଙ୍ଗଶିଉଳି**—ଗଙ୍ଗଶିଉଳି ବାସନାଯୁକ୍ତ ଫୁଲ ଅଟେ । ଅତ୍ୟନ୍ତ ସୁନ୍ଦରଯୁକ୍ତ ଫୁଲ ରାତିରେ ଫୁଟି ସକାଳୁ ଝଡ଼ିଯାଏ । ଗଛଟି ଝଙ୍କାଳିଆ । ପ୍ରାୟ ୧୦।୧୫ ଫୁଟ ଉଚ୍ଚ ହୋଇଥାଏ । ପ୍ରାୟ ଗଙ୍ଗଶିଉଳି ଗଛ ବାଡ଼ ବଗିଚ୍ଚାରେ ଦେଖିବାକୁ ମିଳେ । ଯଦି ଆପଣଙ୍କ ବାଡ଼ିରେ ଏହି ଗଛ ନାହିଁ ତେବେ ତୁରନ୍ତ ଗୋଟିଏ ଲଗାନ୍ତୁ । ଦୁଇଅଣାରୁ ଏକ-ଭରି ପର୍ଯ୍ୟନ୍ତ ଏହାରମାତ୍ରା । ଏବେ ଆସନ୍ତୁ ଦେଖିବା ଏହାର ଔଷଧୀୟ ଗୁଣ ।

**ଔଷଧୀୟ ଗୁଣ**—

ଯେ କୌଣସି ପ୍ରକାର ଜ୍ୱରପାଇଁ ଗଙ୍ଗଶିଉଳିଗଛ ଏକ ଅବ୍ୟର୍ଥ ଔଷଧ ରୂପେ ବ୍ୟବହାର କରାଯାଏ । ଏହି ଗଛର ପତ୍ରରସ ସହ ଅଳ୍ପ ମହୁ ମିଶାଇ ୨ଅଣା ଲେଖାଏଁ ଦୈନିକ ୧୫ରୁ ୨୦ଦିନ ପର୍ଯ୍ୟନ୍ତ ଖାଇଲେ ପାଳିଜ୍ୱର, ଏକୁଆ ଜ୍ୱର, ସନ୍ନିଜ୍ୱର, କର୍ମଜ୍ୱର, ପ୍ଲୀହାଜ୍ୱର

ଉଦାଜ୍ୱର, ପିତ୍ତଜ୍ୱର, ନୂତନ ଜ୍ୱର, ଏକାକାଳୀନ ଜ୍ୱର, ଦ୍ୱିକାଳୀନ ଜ୍ୱର ଆଦିରୁ କ୍ଷାନ୍ତ ମିଳେ । ଏହା ଶରୀରର ରୋଗ ନିରୋଧକ ଶକ୍ତି ବଢ଼ାଏ ।

ଶ୍ୱାସରୋଗ ପାଇଁ ଏହିଗଛ ଚେଳ ଅତ୍ୟନ୍ତ ଉପକାରୀ ଅଟେ । ଗଛର କୋଳକୁ ଜଳରେ ସିଝାଇ କ୍ୱାଥ ତିଆରି କରି ସେଥିରେ ମହୁ ମିଶାଇ ଥରକୁ ୧ଗ୍ରାମ ଦିନକୁ ୨ଥର କିଛିଦିନ ଖାଇଲେ ଶ୍ୱାସରୋଗ ଭଲହୁଏ । ସାଧାରଣ କାଶପାଇଁ ୨।୩ଥର ସେବନ କଲେ ବନ୍ଦ ହୋଇ ଯାଏ ।

ଘା' ଶୁଖିବା ପାଇଁ ଏହାର ଶୁଖିଲା ପତ୍ର ଚୂନା ଅତ୍ୟନ୍ତ ଉପକାରୀ ଅଟେ ।

ବାତରୋଗପାଇଁ ଗଙ୍ଗଶିଉଳି ଗଛ ଉପାଦେୟ ଭୂମିକା ଗ୍ରହଣ କରେ । ଆଣ୍ଠୁ ଗଣ୍ଠି ବାତ, କଟିବାତ ଓ ଆମବାତ ପାଇଁ ଏହାର ପତ୍ରରସ ସହିତ ମହୁ ମିଶାଇ ରୋଗର ମାତ୍ରା ଅନୁସାରେ ୭ଦିନରୁ ୧ମାସ ପର୍ଯ୍ୟନ୍ତ ସେବନ କଲେ ଉପରୋକ୍ତ ରୋଗରୁ ମୁକ୍ତିମିଳେ । ବୟସ ଅନୁପାତରେ ଔଷଧର ମାତ୍ରା ୨ଅଣାରୁ ଅଧଭରି ଓଜନ ପର୍ଯ୍ୟନ୍ତ ସେବନ କରାଯାଇପାରେ ।

ଉଦାଜ୍ୱର ପାଇଁ ଏହିଗଛ ଲାଭଦାୟକ ଅଟେ । ଏହି ଗଛର ପତ୍ର ରସକୁ ରୋଗୀର ନାକରେ ପକାଇଲେ (୫ଦିନ ପର୍ଯ୍ୟନ୍ତ) ରୋଗୀର ଉଦା ଜ୍ୱର ଭଲହୋଇ ନାକର ଫୁଲା କମିଯାଏ ।

ଏହି ଗଛର ପତ୍ରରସସହ ମିଶ୍ରି ମିଶାଇ ସେବନ କଲେ ମଚଳା, ବାଇଅି, କୃମି, ଶୂଳ ପ୍ରଭୃତି ଦୂରହୁଏ ।

ଆପଣଙ୍କ ପେଟରେ ବାୟୁ, ଅଜୀର୍ଣ୍ଣ ଦୋଷ, ଅଗ୍ନିମାନ୍ଦ୍ୟ, କୃମି ଇତ୍ୟାଦିରେ ସୈନ୍ଧବ ଲୁଣ ଓ ଗଙ୍ଗଶିଉଳି ପତ୍ରରସ

ସମପରିମାଣରେ ମିଶାଇ ସେବନ କଲେ ଏହି ରୋଗରୁ ମୁକ୍ତି ମିଳେ । ରକ୍ତହୀନତା ଦୃଷ୍ଟିରୁ ବା ଅଧିକ ଲୁଣସେବନ ଦ୍ୱାରା ଶୋଥରୋଗ ଦେଖା ଦେଲେ ଏହା ଭଲକାମ କରିଥାଏ ।

କର୍ଣ୍ଣରୋଗ ପାଇଁ ଏହିଗଛର ପତ୍ର ଏକାନ୍ତ ଦରକାରୀ ଅଟେ । କଞ୍ଚା ପତ୍ରରସକୁ ସୋରିଷତେଲ ସାଙ୍ଗରେ ମିଶାଇ ଗରମ କରନ୍ତୁ । ସେହି ରସକୁ ଥଣ୍ଡାକରି କାନରେ ଥରକୁ ୧ ବୁନ୍ଦା ଦିନକୁ ୨ଥର ପକାଇଲେ ୭ଦିନ (ରୋଗର ମାତ୍ରା ଅନୁସାରେ) ମଧ୍ୟରେ ବଥଉଠିବା, କର୍ଣ୍ଣଶୂଳ ବା କାନ ଟଣକିବା, କାନପାଚି ଦୁର୍ଗନ୍ଧଯୁକ୍ତ ପୂଜବହିବା, ବଧିରତା, କାନରେ କୀଟ ସୃଷ୍ଟିହେବା, କର୍ଣ୍ଣକୁ ନାନା ପ୍ରକାର ଶବ୍ଦ ଶୁଭିବା ଆଦି ଦୋଷ ନିବାରିତ ହୁଏ ।

**ବିଶେଷ ସୂଚନା**—ଅନ୍ନପ୍ରାଶନ ପିଲାଙ୍କ ଦୁଆ ଦୋଷପାଇଁ ପିଲା ଝାଉଁଳା ହୋଇ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ନ୍ତି । ଡାକ୍ତରୀ ବିଦ୍ୟା ମଧ୍ୟ ବେଳେ ବେଳେ ଫେଲ୍ ମାରିଯାଏ । ସେଥିପାଇଁ ଅଷ୍ଟମୀ ତିଥିଯୁକ୍ତ ଅଶ୍ୱିନୀ ନକ୍ଷତ୍ରରେ ଗଙ୍ଗଶିଉଳି ଗଛର ଚେର ଆଣି ରଖିଥିବ । ଦୁଆ ଦୋଷ ପିଲାର ହାତରେ ବା ଅଣ୍ଟାରେ ନାଲିସୂତା ବା ଧଳା ସୂତାରେ ବାନ୍ଧି ଦେଲେ ଉକ୍ତ ଦୋଷ କଟିଯାଏ ।

ତେବେ ଆମ ଭିତରେ ପ୍ରଶ୍ନ ଉଠେ, ଏତେ ଗୁଡ଼ିଏ ଉପକାରରେ ଲାଗୁଥିବା ସୁଗନ୍ଧଯୁକ୍ତ ଫୁଲଗଛଟିଏ ଆମ ବାଡ଼ିରେ ଲଗାଇ ପାରିନେ । ଏହା ଦୁଃଖର ବିଷୟ ନୁହେଁ କି ? ଗଙ୍ଗଶିଉଳି ଗଛର ବଗିଚାଟିଏ ସୃଷ୍ଟି କଲେ ମଧ୍ୟ ପ୍ରାକୃତିକ ଶୋଭା ବର୍ଦ୍ଧନ ସଙ୍ଗେ ସଙ୍ଗେ ସୁଗନ୍ଧଯୁକ୍ତ ଫୁଲରେ ଚଉଦିଗ ମହକିଥାଏ । ଏହିଫୁଲର ହାରକୁ ଶିବଙ୍କୁ ଦୈନିକ ପିନ୍ଧାଇଲେ ଶିବ ପ୍ରସନ୍ନ ହୁଅନ୍ତି ।

**୨୯-କୋଚଲ୍**—କୋଚଲଗଛ ପ୍ରାୟ ସମସ୍ତଙ୍କର ଜଣାଶୁଣା । ଗାଢ଼ସବୁଜ ପତ୍ରଯୁକ୍ତ ଖୁବ୍ ବଡ଼ବଡ଼ । ଏହା ଏକପ୍ରକାର ବିଷାକ୍ତଶ୍ରେଣୀର ବୃକ୍ଷ । କେବଳ ବାହ୍ୟ ପ୍ରୟୋଗ କରାଯାଏ । ଏଥିରେ ମଧ୍ୟ ସାବଧାନ ରହିବା ଉଚିତ୍ । ନ ହେଲେ କ୍ଷତଗ୍ରସ୍ତ ହେବାକୁ ପଡେ ।

କାଛୁ, କୁଣ୍ଡିଆ ପାଇଁ ଏହା ଅତ୍ୟନ୍ତ ଉପଯୋଗୀ । ଏହାର ପତ୍ରକୁ ଜଳରେ ସିଝାଇ ସେହି ଜଳରେ କାଛୁ,କୁଣ୍ଡିଆ, ମଚଳା ପ୍ରଭୃତ ଧୌତ କଲେ ଶିଘ୍ର ଭଲ ହୋଇଥାଏ ।

ଏହିପତ୍ରକୁ ବାଟି କୁକୁର କାମୁଡିବା ସ୍ଥାନରେ ଲେପଦେଲେ ବିଷ ହରଣ ହୁଏ ।

ଗୋଡ଼ କନ୍ଦା, ହାତକନ୍ଦା ପାଇଁ ଏହି ଗଛର କଞ୍ଚାଫଳ, ପତ୍ର ଓ ଲୁଣ ଏକତ୍ର ବାଟି ଲଗାଇଲେ ଭଲହୁଏ ।

ବାତରୋଗ ପାଇଁ ଏହା ଏକ ଅବ୍ୟର୍ଥ ଔଷଧ ଅଟେ । କୋଚଲ ଗଛର କଅଁଳପତ୍ରକୁ ସିଝାଇ ଛୁଣ୍ଡା କମ୍ବଳ ବୁଡାଇ ଉଷୁମ ସେକଦେଲେ ଆଣ୍ଠୁଗଣ୍ଠିବାତ, କଟିବାତ, ମେଣ୍ଟାମୁଣ୍ଡିଆବାତ ଭଲହୁଏ ।

ହାତରେ, ଗୋଡ଼ରେ ଗଳିରକ୍ତ ପଡ଼ିଥିଲେ ଏହାର କଅଁଳିଆ ପତ୍ରକୁ ଚକକ୍ଷଣକରି ବାଟି ଲେପଦେଲେ ଏହିରୋଗ ଭଲହୁଏ ।

ଯାଦୁରୋଗ, କାଛୁ, କୁଣ୍ଡିଆ ପାଇଁ ଏହା ଆଶ୍ଚର୍ଯ୍ୟଜନକ ଫଳ ଦେଇଥାଏ । ଅବଶ୍ୟ କଷ୍ଟ ସାଧ୍ୟ । ଗାଈ ଲହୁଣି, ଟାଙ୍ଗଣାଖଇ, ଗୋଲ

ମରିଚ ଗୁଣ୍ଡା, କୋଚିଲ ପତ୍ରରସ ସବୁକୁ ଏକାଠି ମିଶାଇ ଏକ ମଲମ ପ୍ରସ୍ତୁତ କରନ୍ତୁ । ତା'ପରେ ଉକ୍ତରୋଗ ହୋଇଥିବା ସ୍ଥାନମାନଙ୍କରେ ଲଗାଇଲେ ରୋଗ ଭଲହୁଏ ।

**୩୦-ଅଗସ୍ତି**—ଏହାଖୁବ୍ ବଡଗଛ । ଶାଖା ପ୍ରଶାଖାଯୁକ୍ତ ହେତୁ ବହୁତସୁନ୍ଦର ଦିଶେ । କାର୍ତ୍ତିକମାସରେ ବିଧବାସ୍ତ୍ରୀଲୋକମାନେ ଏହିଗଛର ଶାଗ ଖାଆନ୍ତି । ଏହାପ୍ରାୟ ଜଣାଶୁଣା । ଏହା ଅତ୍ୟନ୍ତ ଉପକାରୀ ଗଛ ଅଟେ ।

**ଗୁଣ ବିଚାର**—ଅଗ୍ନିଦୀପକ, ଶୀତଳ, ଚକ୍ଷୁର ହିତକର, ତୃଷ୍ଣା-ବମନ, ଦାହ, କଫ, ପିତ୍ତ, ଯୋନିବ୍ୟଥା, କାଶ, ଶ୍ୱାସ, ମଳରୋଧ, ତନ୍ଦ୍ରା, ଶୋଥ ଇତ୍ୟାଦି ରୋଗରେ ବ୍ୟବହାର କରାଯାଏ ।

**ପ୍ରୟୋଗ ବିଧି**—ଏହି ଗଛର ପତ୍ରରସସହ ମହୁ ମିଶାଇ ୨ଅଣା ପରିମାଣରେ ଦିନକୁ ଥରେ ୭।୮ଦିନ କିମ୍ବା ରୋଗର ମାତ୍ରାଧିକ ଅନୁ-ସାରେ ୧୫ଦିନରୁ ମାସେ ପର୍ଯ୍ୟନ୍ତ ସେବନ କଲେ କଣ୍ଠନଳୀ ପୀଡା, କାଶ, ଶ୍ୱାସ, ବମନ, ତୃଷ୍ଣା ଆଦି ରୋଗ ଭଲହୁଏ ।

ଏହାର ପତ୍ରକୁ ଶାଗକରି ଖାଇଲେ ଅମ୍ଳ ପିତ୍ତ ଦୋଷ ଦୂରହୁଏ ।

**ବିଶେଷ ସୂଚନା**—ଅଗସ୍ତି ଗଛର ଚେର ଶନିବାର ଦିନ ଆଣି ପାଖରେ ରଖିଲେ ଶତ୍ରୁ କିଛି କରିପାରନ୍ତି ନାହିଁ ।

**୩୧-ଅରଖ**—ଏହା ୨ପ୍ରକାର । ଶ୍ୱେତ ଅରଖ ଓ ରକ୍ତ ଅରଖ । ଅରଖ ଫୁଲଗଛ ପ୍ରାୟ ସମସ୍ତେ ଜାଣନ୍ତି । ଏହିଗଛ ଏକ ପ୍ରକାର ଗୁଳ୍ମରେ ପରିଚିତ । ଏହି ଗଛର ପତ୍ରକୁ ଭାଙ୍ଗିଲେ କ୍ଷୀର ବାହାରିଥାଏ । ଏହାର ମାତ୍ରା ୧ଅଣାରୁ ୪ଅଣା ପର୍ଯ୍ୟନ୍ତ ।

ଏହିଗଛର ପତ୍ରର ରସକୁ ସୋରିଷତେଲ ସାଙ୍ଗରେ ପାକକରି କାନ୍ଧ, କୁଣ୍ଡିଆ ସ୍ଥାନରେ ଲଗାଇଲେ ଭଲହୁଏ ।

ଏହାର ମୂଳପାଖରେଛେଲିକୁ କାଞ୍ଜିପାଣିରେ ବାଟି ପ୍ରଲେପ ଦେଲେ କୋଷ ବୃଦ୍ଧିର ପୀଡ଼ା ଦୂର ହୁଏ ।

ଅରଖ ପତ୍ରର ସହିତ ସମ ପରିମାଣର ମହୁ ମିଶାଇ ସେବନ କଲେ ପୁରାତନ ଜ୍ୱର, ପ୍ଳୀହାଜ୍ୱର, ଗୁଳୁଜ୍ୱର, ଅଜୀର୍ଣ୍ଣ, ମଳବନ୍ଧ ଓ ଉଦରି ରୋଗ ଭଲହୁଏ ।

**ବିଶେଷ ସୂଚନା**—ପ୍ରସବ ଯନ୍ତ୍ରଣାରୁ ମୁକ୍ତପାଇବା ନିମିତ୍ତ ପୁଷ୍ୟା ନକ୍ଷତ୍ରଯୁକ୍ତ ଶନିବାର କିମ୍ୱା ରବିବାର ଏହାର ମୂଳକୁ ଆଣି ପ୍ରସବ କାଳରେ ରୋଗୀର ମସ୍ତକରେ ବାନ୍ଧିଲେ ଶୀଘ୍ର ପ୍ରସବ ହୁଏ ।

ଚନ୍ଦ୍ରଗ୍ରହଣ ସମୟରେ ଏହିଗଛର ଚେର ନିଜପାଖରେ ରଖିଲେ ସିଦ୍ଧି ଦାୟକ ଅଟେ ।

**୩୨-ବେଗୁନିଆଁ**—ଏହା ଦୁଇପ୍ରକାର । ଶ୍ୱେତ ଓ ନୀଳ । ଧଳାଗଛରେ ଧଳା ଫୁଲ, ନୀଳ ଗଛରେ ନୀଳବର୍ଣ୍ଣ ଫୁଲ ଅଟେ । ଗୁଣ ରାଶିରେ ଦୁହେଁ ସମାନ । ଏହା ପ୍ରାୟ ସବୁ ସ୍ଥାନରେ ଦେଖାଯାଏ । ଗଡ଼ଜାତ ଅଞ୍ଚଳରେ ବେଶୀ ଦେଖାଯାଏ । ଏହା ସମସ୍ତ ପ୍ରକାର ବିଷ ନାଶ କରିଥାଏ । ୨ଅଣାରୁ ୧ ତୋଳା ପର୍ଯ୍ୟନ୍ତ ସେବନ କରାଯାଏ । ବୟସ ଓ ରୋଗର ମାତ୍ରା ଅନୁସାରେ ସେବନ ବିଧି ନିର୍ଣ୍ଣୟ କରାଯାଏ ।

## ରୋଗ ଓ ଏହାର ପ୍ରୟୋଗ ବିଧି—

ଏହି ଗଛର ମୂଳ ପାଖର ଛେଲିକୁ ଆଣି ଦହି ସହିତ ବାଟି ଖାଇଲେ ଦେହରେ ବଳବୀର୍ଯ୍ୟ ବଢ଼ିବା ସଙ୍ଗେ ସଙ୍ଗେ ସ୍ମରଣଶକ୍ତି

ବଢ଼େ । ୨ଅଣା ଲେଖାଏଁ ୩୦ ଦିନରୁ ୯୦ ଦିନ ପର୍ଯ୍ୟନ୍ତ ଖାଇବା ଉଚିତ୍ ।

ପୁରାତନ କାନପଚା ରୋଗୀଙ୍କି ଏହାର ପତ୍ରରସକୁ ସୋରିଷ ତେଲ ସହିତ ଗରମ ଉଷ୍ଣକରି କାନରେ ପକାଇଲେ କାନପଚା ରୋଗ ଭଲହୁଏ । ବଧିରତା ମଧ୍ୟ ଦୂର ହୁଏ ।

କାନର ବା ଦାନ୍ତର ଯେକୌଣସି ପ୍ରକାର ବେଦନାପାଇଁ ଏହାର ରସକୁ ଉଷ୍ମକରି ସେକଦେଲେ ଉପଶମ ମିଳେ ।

ଏହିଗଛର ପତ୍ରରସ ସହିତ ମହୁ ମିଶାଇ କିଛୁଦିନ ସେବନ (୨୧ ରୁ ୩୩ ଦିନ ପର୍ଯ୍ୟନ୍ତ) କଣ୍ଠର ସ୍ୱର ସୁନ୍ଦର ମଧୁର ବାଣୀ ପ୍ରାପ୍ତ ହୋଇଥାଏ ।

ଏହାର ପତ୍ରକୁ ଛେଚି ନିଆଁରେ ଉଷୁମକରି ଆଣ୍ଠୁ ବା ଗଣ୍ଠିରେ ରକ୍ତଗଡ଼ିବା ସ୍ଥାନ ବା ବଦରକ୍ତ ସ୍ଥାନରେ ଲେପ ଦେଲେ ୧୨ଘଣ୍ଟା ମଧ୍ୟରେ ଉପଶମ ମିଳେ ।

ଏହି ଗଛର ରସ ସଙ୍ଗରେ କର୍ପୂର ମିଶାଇ ଲଗାଇଲେ (୭ ଦିନ ପର୍ଯ୍ୟନ୍ତ) ବାଇଞ୍ଚ, ମଚକା, ଚମଦଳା ଭଲହୁଏ ।

**ବିଶେଷ ସୂଚନା**—ଏହି ଗଛର ମୂଳରେ ଥିବା ଏକ ଗୁଆ ଜାଙ୍ଗପୂ ପଦାର୍ଥକୁ ଆଣି ଘରେ ରଖିଲେ ସକଳ କାର୍ଯ୍ୟ ସିଦ୍ଧି ହୁଏ ।

ବେଗୁନିଆଁ ଗଛର ମୂଳଆଣି ଗୋରୁ ଗୁହାଳର ମଝିରେ ଟାଙ୍ଗିଦେଲେ ଗୋରୁଙ୍କର ଯାବତୀୟ ରୋଗ ଭଲହୁଏ ।

ସମାପ୍ତ

# ବେଦମାତା ଆୟୁର୍ବେଦ ସେବାସଦନ

## କବିରାଜ—ଶ୍ରୀ ଶିବ ପ୍ରସାଦ ଆଚାର୍ଯ୍ୟ

ରେ. ନଂ.-୧୩'୧୮

ଗାନ୍ଧିଛକ, ଜଗତସିଂହପୁର-୭୫୪ ୧୦୩

ଦୂରଭାଷ-୨୧୫୧

ଏଠାରେ ସମସ୍ତ ପ୍ରକାର ନୂତନ, ପୁରାତନ, ରୋଗର ଚିକିତ୍ସା ଏବଂ ଆୟୁର୍ବେଦ ଔଷଧ ଉପଲବ୍ଧ ହୁଏ । ପକ୍ଷାଘାତ ଏବଂ ସମସ୍ତ ବ୍ୟାଧିର ସଫଳ ଚିକିତ୍ସା କରାଯାଏ ।





ପ୍ରକାଶକ - ସୁଧୀର କୁମାର ଜେନା, ସଂପାଦକ
ଶୁଭଶ୍ରୀ, ସମାଜସେବା ସାହିତ୍ୟ ସାଂସ୍କୃତିକ ସଂସଦ

ସଂପାଦକ - ନିର୍ମଳ ଗୌତମ, ସହ-ସଂପାଦକ
ଶୁଭଶ୍ରୀ, ସମାଜସେବା ସାହିତ୍ୟ ସାଂସ୍କୃତିକ ସଂସଦ

ଲେଖକ/
ସଂଗ୍ରାହକ - କବିରାଜ ବିଭୁତି ଭୂଷଣ ଦାଶ
ଡା. କମଳା କାନ୍ତ ମିଶ୍ର
ଅରୁଣ କୁମାର ଆଚାର୍ଯ୍ୟ

ପ୍ରଚ୍ଛଦ - ଅଜୟ କୁମାର ଦାସ
ଅଭିଲୋ, କାଡୁଅ ପଡା, ଜଗତସିଂହପୁର

ମୁଦ୍ରଣ - କୁମାର ପ୍ରିଣ୍ଟର୍ସ, ଗୋପାଳ ସାଗର, ଜଗତସିଂହପୁର

ବଢାଅ ବୃକ୍ଷ ରାଜୀ
କମାଅ ଜନ
ସମୃଦ୍ଧ ଦେଶେ ସୁଖେ
କାଟିବ ଦିନ ।

ସୌଜନ୍ୟ : **ପାଞ୍ଚଜନ୍ୟ**
ସ୍ୱେଚ୍ଛାସେବୀ ସାଂସ୍କୃତିକ ସାମାଜିକ ପରିଷଦ, ଜଗତସିଂହପୁର

Published during N.E.A.C. - 1996-97 by : SUBHASHREE SAMAJ SEVA SAHITYA SANSKRUTIK SANSAD, Basantpur, Anakhia, Jagatsinghpur

Supported by : FOREST & ENVIRONMRNT DEPT., Govt. of India
ENVIRONMRNT & FOREST DEPT., Govt. of Orissa

Donation Rs. 10/-